# ବିନ୍ଦୁ ବିନ୍ଦୁରେ
# ରକ୍ତର ବିପ୍ଳବ



Mourn not the dead
But the apathetic throng.
The cowed and the meek,
Who see the world's great wrong
And dare not speak.



ଭଗବତ୍ ପ୍ରସାଦ ରଥ

ସୂର୍ଯ୍ୟରୁ ଦୂରନ୍ତ ଦେଶ, ମୃତ୍ୟୁରୁ ଜଗତ

# ଭଗବତ୍ ପ୍ରସାଦ ରଥ

କ୍ରାନ୍ତିକାମୀ ଲେଖକ ଓ ପାଠକ ସଂଘ
ଗଞ୍ଜାମ

ଝଡ଼ଠୁ ଦୂରନ୍ତ ସେ, ମୃତ୍ୟୁଠୁ ବସଚ


ଲେଖକ :

**ଭଗବତ୍ ପ୍ରସାଦ ରଥ**
ଗଞ୍ଜାମ





ପ୍ରକାଶକ :

**କ୍ରାନ୍ତିକାମୀ ଲେଖକ ଓ ପାଠକ ସଂଘ**
ଗଞ୍ଜାମ

ପ୍ରଥମ ସଂସ୍କରଣ : ଜାନୁଆରୀ ୧୯୮୮

ମୁଦ୍ରଣ :
**ଜ୍ଞାନ ପ୍ରକାଶିନୀ**
ରିଚାର୍ଡସନ୍ ହୋଷ୍ଟେଲ ରୋଡ୍
ବ୍ରହ୍ମପୁର-୭୬୦୦୦୧

**ମୂଲ୍ୟ—୧୨-୦୦ [ବାର ଟଙ୍କା ମାତ୍ର]**

Mourn not the dead
But rather the apathetic throng.
The cowed and the meek,
Who see the world's great wrong
And dare not speak.

ଶୋକ କରନାହିଁ ମୃତ ଲୋକଙ୍କର ପାଇଁ,
ବରଂ ଦୁଃଖୀଙ୍କର ଉଦାସୀନ ନିସ୍ପନ୍ଦ ଲୋକଙ୍କପାଇଁ
କାରଣ,
ସେହି କାପୁରୁଷ ଓ ଭୟାଳୁ ଲୋକମାନେ
ପୃଥିବୀର ଅମାପ ଅନ୍ୟାୟ ଦେଖି ମଧ୍ୟ
ସାହାସ କରନ୍ତିନି ମୁହଁ ଖୋଲିବାରପାଇଁ

ସବୁ କିଛି ହଜିଯିବାର ସେଇ ଭୟଙ୍କର ମୁହୂର୍ତ୍ତ ଗୁଡିକ ।

ସେଇ ବିପଦଭରା କଠିନ ସମୟ, ଯେତେବେଳେ ଦୁଃଖର କୂପରୁ ବାରମ୍ବାର ପାନ କରିକରି ମଣିଷର ମନ ଅସାଡ଼ ହୋଇଯାଏ ।

ଆଜି ଆଶାର ମଶାଣିରେ ପଡିରହେ ଖାଲି ଭଙ୍ଗା ଭଙ୍ଗା ସ୍ୱପ୍ନର ଛୋଟ ଛୋଟ ଟୁକୁରା ଗୁଡ଼ିକ ।

କି ବିଭତ୍ସ ! କି ନିର୍ମମ ! କି ମର୍ମନ୍ତୁଦ !

ଭାରତର ରାଜଧାନୀ କାନ୍ଦୁଛି ।

କାନ୍ଦୁଛି ଐତିହାସିକ ନଗରୀ, ଯେ ଦେଖିଛି ଏଇ ପୁରୁଣା ପ୍ରସିଦ୍ଧ ମାଟିର ପାଞ୍ଚହଜାର ବର୍ଷର ଇତିହାସକୁ ।

ଦିଲ୍ଲୀର ଜୀବନ ପୁସ୍ତକରେ କାନ୍ଦିବାର ଅଧ୍ୟାୟ ସଂଖ୍ୟା କମ୍ ନୁହେଁ । ଚକ୍ରୀର ଇଙ୍ଗିତରେ କୁରୁକ୍ଷେତ୍ରରେ କୌରବ କୁଳର ଧ୍ୱଂସ ଦିଲ୍ଲୀକୁ ଶିହରିତ କରିଛି ।

ଶତଦଳ ପଦ୍ମର ରୂପକୁ ଧିକ୍କାରୁଥିବା ରାଜବାଳା ସଂଯୁକ୍ତାର ଚିତାରୋହଣ ଦିଲ୍ଲୀ ଚକ୍ଷୁକୁ ସଜଳ କରିଛି ।

ଚେଙ୍ଗିଜ ଖାଁ, ଅହମଦ୍ ଶା, ଗୋରା ପଲ୍ଟନ୍ ସମସ୍ତଙ୍କର ଦୌରାତ୍ମ୍ୟ ଦିଲ୍ଲୀ ଧରଣୀକୁ କଂପିତ କରିଛି, ଶଂକିତ କରିଛି । ପୁଣି ଆସିଛି ଏକ କରୁଣ ଅଧ୍ୟାୟ ଦିଲ୍ଲୀ ଜୀବନରେ ! ଲିଭି ଆସୁଛି ଏକ ଦୀପଶିଖା ଯାହାର ଆଲୋକ ସାରା ଭାରତକୁ ଉଜ୍ଜଳ କରିଥିଲା ।

ଲକ୍ଷ୍ମୀର ଗତି ସର୍ବଦା ଯୌବନରେ ଉଚ୍ଛଳ । ତାର ଚକ୍ଷୁରେ ଅପେକ୍ଷ୍ୟ ରଙ୍ଗିନ ଆଲୁଅର ଫଟୁଆର ।

'ଏ କାଳବନ୍ତି କ'ଣ ଫାନ୍ତବନ ?' ପ୍ରେଷ୍ଣା ଜନଦଳର ତରୁଣ ନେତା ଗୌତମଙ୍କ କଣ୍ଠ ଅଶ୍ରୁଳ ଥିଲା । ମନ୍ଦାର ପାଖୁଡ଼ା ଭଳି ନାଲି ଫୁଲ ଫୁଲ ଆଖିର ଦୃଷ୍ଟି ଗୌତମଙ୍କ ଉପରେ କେନ୍ଦ୍ରୀଭୂତ କରି ରାମ କୃଷ୍ଣନ୍ କହିଲେ, 'ତମେ କେବଳ ବିଶ୍ରାମ କର ଗୌତମ ଫ୍ଲୁରୁ ତମେ ଅଳ୍ପଦିନ ତଳେ ମୁକୁଳିଛ ।'

'ଆଜ୍ଞ ବିଶ୍ରାମ ?' ମ୍ଳାନହାସ ଗୌତମ ସିଂଙ୍କ ଅଧରକୁ ପୀଡ଼ିତ କରୁଥିଲା । ୟୁସୁଫ୍ ବସିଥିଲେ ଏକ ଚିନ୍ତା ପ୍ରତିମା ଭଳି ।

ପାର୍ଲାମେଣ୍ଟରେ ଝଡ଼ ସୃଷ୍ଟି କରୁଥିବା ତିନିଜଣ ତରୁଣ ସଭ୍ୟଙ୍କ ମୁହଁର ତେଜ ମଉଳି ଯାଇଥିଲା । କାରଣ ବିପ୍ଳବୀ ଜନଦଳର ପ୍ରତିଷ୍ଠାତା ତରୁଣ ହୃଷୀକେଶ ହସ୍ପିଟାଲ ରୁମ୍‌ରେ ଶେଷ ପ୍ରହର ଗଣୁଥିଲେ ।

'ଡାକ୍ତରମାନଙ୍କର ଅନୁମତି ମୋତେ ମିଳିଲାନି ଗୁରୁଦେବଙ୍କ ଦର୍ଶନ କରିବାପାଇଁ ।' ଗୌତମଙ୍କ ସ୍ୱରରେ କାନ୍ଦଣାର ଉଚ୍ଛ୍ୱାସ ଗୁପ୍ତ ନଥିଲା ।

'ମୋର ସନ୍ଦେହ ଏ ଭିତରେ କିଛି ଷଡ଼ଯନ୍ତ୍ର ରହିଛି ।' ୟୁସୁଫ୍ ବହୁ ସମୟ ପରେ ନୀରବତା ଭଙ୍ଗ କରିଥିଲେ ।

'ଷଡ଼ଯନ୍ତ୍ର ଆଉ ରହିଲା କେଉଁଠି ? ହୃତ୍‌ପିଣ୍ଡ ସ୍ପେସିଆଲିଷ୍ଟମାନେ ତ ଏ ନିର୍ଦ୍ଦେଶ ଦେଇଛନ୍ତି ।' ରାମକୃଷ୍ଣନ କହିଲେ ।

'ମୋତେ ସବୁ କେମିତି କେମିତି ଅଦ୍‌ଭୁତ ଜଣାପଡୁଛି । ସରକାରଙ୍କ ଅତ୍ୟଧିକ ଆଗ୍ରହକୁ ମୁଁ ହଜମ କରିପାରୁନି ।'

'ୟୁସୁଫ୍‌ର ସବୁ କଥାରେ ସନ୍ଦେହ ।' ରାମକୃଷ୍ଣନ୍ କହି ଉଠିଲେ ।

'ଏହା କେମିତି ସମ୍ଭବ ହେଲା ? ଏତେ ସୁନ୍ଦର ସ୍ୱାସ୍ଥ୍ୟ !' ଗୌତମଙ୍କ ଅଶ୍ରୁଳ କଣ୍ଠରୁ ଶବ୍ଦ ଯେମିତି ନିର୍ଗତ ହୋଇପାରୁ ନଥିଲା ।

'ଦୁର୍ଭାଗା ଏ ଦେଶ !' ରାମକୃଷ୍ଣନ୍ କହିଉଠିଲେ ।

ଦୁଃଖର ସମୟ ଶୀଘ୍ର ଗତି କରୁନଥିଲା । ସମଗ୍ର ଭାରତରେ ଆତଙ୍କ ଓ ଉଦ୍‌ବେଗର ଏକ କଳାଛାୟା ବ୍ୟାପିଯାଇଥିଲା । 'ଏଥିରେ ଏ ଜନ୍ମାନ୍ଧ ସରକାରର କିଛି ହାତ ନାହିଁ ?' ୟୁସୁଫ୍ ପୁଣି ଫେରି ମନ୍ତବ୍ୟ ଦେଇଥିଲା ।

ରାମକୃଷ୍ଣନ ମଧ୍ୟ ଚିନ୍ତିତ ଥିଲେ । ବାସ୍ତବିକ ୟୁସୁଫର କଥାକୁ ପୁରାପୁରି ମିଥ୍ୟା ବୋଲି ଉଡ଼ାଇଦେବା ସମ୍ଭବ ନଥିଲା । ରେଡ଼ିଓ ଓ ଖବର କାଗଜରେ ଯେଉଁଭଳି ପ୍ରସ୍ତରର ସୁଅ ଛୁଟିଥିଲା, ସ୍ପେସାଲିଷ୍ଟ ଡାକ୍ତରମାନେ ଯେଉଁଭଳି ସମସ୍ତଙ୍କଠାରୁ ରୋଗୀକୁ ଅଲଗା ରଖିବାର କଡ଼ା ବ୍ୟବସ୍ଥା ଚାଲୁ ରଖିଥିଲେ; ସେ ସମସ୍ତର ମାତ୍ରାଧିକ୍ୟ ସନ୍ଦେହର ପୃଷ୍ଠପୋଷକତା କରୁଥିଲା ।

କାନ୍ଥ ଘଣ୍ଟାରେ ବାରଟା ବାଜିଲା । ହଠାତ୍ ଟେଲିଫୋନ ଜୋର୍‌ରେ ବାଜି ଉଠିଲା । ରାମକୃଷ୍ଣନ୍ ଟେଲିଫୋନ ଧରି କ୍ଷଣକରେ ରିସିଭର୍ ଥୋଇ-ଦେଲେ । 'ଦୀପ ଲିଭିଗଲା !' ରାମକୃଷ୍ଣନ ଥରା କଣ୍ଠରେ କହିଲେ ।

ଗୌତମଙ୍କ ମୁଣ୍ଡ ଟେବୁଲ ଉପରେ ନଇଁ ପଡ଼ିଲା । ୟୁସୁଫ କଇଁ କଇଁ ହୋଇ କାନ୍ଦି ଉଠିଲେ । ମନେ ହେଲା ଯେପରି ୧୯୪୮ର ତିରିଶି ଜାନୁ-ୟାରୀ ଜାଗି ଉଠିଛି । ରାମକୃଷ୍ଣନ ବାହାରକୁ ଯାଇ ଜିପ୍ ଡ୍ରାଇଭରକୁ ଉଠାଇଲେ । ଖୁବ୍ କମ ସମୟପରେ ତିନି ବନ୍ଧୁ ବାହାରି ପଡ଼ିଲେ ସେମାନଙ୍କର ପ୍ରିୟ ନେତାଙ୍କର ପକ୍ଷୀହୀନ ପିଞ୍ଜର ଦେଖିବାଲାଗି ।

ସ୍ପେଶାଲ ହୋମରେ ପହଞ୍ଚିଲାବେଳକୁ ସକାଳ ହୋଇ ଯାଇଥିଲା । ସୂର୍ଯ୍ୟଲାଲ ଆଖିରେ ସଂସାରକୁ ଚାହୁଁଥିଲେ ।

କେବଳ ନିସ୍ତବ୍ଧତା ସେମାନଙ୍କ ପାଇଁ ମ୍ଳାନ ମୁଖରେ ଅପେକ୍ଷା କରିଥିଲା । ସ୍ୱାମୀଜୀଙ୍କ ପାର୍ଥିବ ଦେହ ସେତେବେଳକୁ ଉନ୍ମୁକ୍ତ ଆକାଶର ବକ୍ଷରେ ଜୋରପୂର୍ବ ଜ୍ୱଳୁଥିଲା । ତନ୍ୱୀ ଦେବବାଳାଙ୍କ ଅସଂଖ୍ୟ ଅଶ୍ରୁବିନ୍ଦୁ ଦ୍ରୁତଗାମୀ ବିମାନ ଗର୍ଭରେ ଝରି ଉଡ଼ୁଥିଲା ।

'ଉଡ଼ାଜାହାଜ ଉଡ଼ା ହଉଚି, ଗୌତମଜୀ ?' ଉତ୍କଣ୍ଠିତ ୟୁସୁଫ୍ ପ୍ରଶ୍ନକଲେ ।

'ଟାଇଫଏଡ୍‌ରେ ଏତେ ଭଲପାଣି ନାହିଁ ।' ଗୌତମ ଏକ ଦୀର୍ଘନିଶ୍ୱାସ ତ୍ୟାଗ କଲେ ।

'ତାହେଲେ ଆମେ କ'ଣ ନେତାଙ୍କର ଶେଷ ଦର୍ଶନ ପାଇବାନି ?' ୟୁସୁଫ୍ ବ୍ୟାକୁଳ କଣ୍ଠରେ ପ୍ରଶ୍ନକଲେ ।

ଗୌତମ ନୀରବ ଥିଲେ । ଆଖିରୁ ତାଙ୍କର ଗଙ୍ଗାଯମୁନା ଛୁଟିଥିଲା । ରାମକୃଷ୍ଣନଙ୍କ ଇଙ୍ଗିତରେ ଡ୍ରାଇଭର୍ ପୁଣି ଜିପ୍‌କୁ ଫେରାଇ ନେଇଥିଲା ।

ହୃଦୟ ଦୋହଲା ଦୁଃଖ କ'ଣ ଏକାକୀ ଆସେ ?

ସକାଳ ଆଣିଲା ଦଳପାଇଁ ଆଉ ଏକ ସର୍ବନାଶୀ ଖବର । ରେଡିଓ ଘୋଷଣା କଲା 'ଦ ରେବେଲ'ର ସମ୍ପାଦକ ସାକେତ ଶର୍ମା ଏନ୍‌କାଉଣ୍ଟର୍‌ରେ ଜୀବନ- ହରାଇଛନ୍ତି ।

'ଚାଲିଗଲେ ସାକେତ ଶର୍ମା !' ରାମକୃଷ୍ଣନ୍ ଗୁଣୁ ଗୁଣୁ କରି କହି ଉଠିଲେ ।

'ସେ କେମିତି ସହି ପାରିଥାନ୍ତେ ପ୍ରିୟ ବନ୍ଧୁ ସ୍ୱାମୀନାଥଙ୍କର ବିଚ୍ଛେଦକୁ ?'

ସ୍ୱାମୀନାଥ ଓ ଶର୍ମା !

ଭାରତର ରାଜନୈତିକ ଆକାଶର ଦୁଇ ଉଜ୍ଜ୍ୱଳ ତାରକା । ସାକେତ ଶର୍ମାଙ୍କର ଲେଖାରେ ତରବାରୀର ଧାର, ବାଣୀରେ ଆଗ୍ନେୟଗିରିର ବିସ୍ଫୋରଣ ଶକ୍ତି ଥିଲା ।

ଶାସକ ଦଳର ଆକାଶରେ ଏ ବନ୍ଧୁଦ୍ୱୟ ଥିଲେ ଅଗ୍ନିବର୍ଷୀ ଧୂମକେତୁ ।

ଗୌତମ ଦେହରେ ଚେତନା ଥିବା ଭଳି ଜଣା ଯାଉନଥିଲା ।

ଉଦ୍ୟତ ଅଶ୍ରୁକୁ ରୋକୁ ରୋକୁ ଯୁସୁଫ୍ ଗାଇ ଉଠିଥିଲେ
ନମ୍ରଶିରେ ସୁଖେର ଦିନେ
ତୋମାର ମୁଖ ଲଇବ ଚିନେ,
ଦୁଖେର ରାତେ ନିଖିଲ ଧରା ଯେଦିନ କରେ ବଂଚନା
ତୋମାରେ ଯେନ ନା କରି ସଂଶୟ ।

ଝଡ଼ୁକୀ ଜନତାର ? ଏକ ଚରମ ଦୁର୍ଦ୍ଦିନରେ ଭାରତ ଶୁଣିଥିଲା ତାର ଜନ୍ମର ଶୁଭବାର୍ତ୍ତା ।

ଅବସାଦଗ୍ରସ୍ତ ଜନତାର ମନକୋଠରୀରେ ଆଶାର ମହମବତୀ ଜଳି ଉଠିଥିଲା ।

ଦେଶସାରା ଦୁର୍ନୀତିର ଉଦ୍ଧତ ପଦକ୍ଷେପ ।

ପ୍ରତିଶ୍ରୁତିର ଜଙ୍ଗଲ ମଧ୍ୟରେ ଉଦ୍ଭ୍ରାନ୍ତ ପଥହରା । ଶାସକଦଳର ହୀନ ସ୍ୱାର୍ଥପରତାର ଚୂଡ଼ା ଆକାଶସ୍ପର୍ଶୀ । ଉଦାସ ମଣିଷ ଆକାଶଆଡ଼େ ଚାହିଁ ଭାବୁଥିଲା, 'ଏ ଯାତନାର କ'ଣ ଶେଷ ନାହିଁ ?'

ଗାଁ ଗାଁରେ ଅନ୍ଧକାର କଳାଛାୟା ବୁଲି ଯାଉଥିଲା । ବଡ଼ ବଡ଼ ନଗରର ଆକାଶଚୁମ୍ବୀ ମହଲରେ ମଦ୍ୟର ବରଫ ବରଫ ଭଣ୍ଡାର ଜୁଆର ଛୁଟିଥିଲା ।

ଆଖିକୁ ଚମକାଇ ଦେଉଥିବା ରଙ୍ଗୀନ ଆଲୋକର ଉଚ୍ଛ୍ୱସିତ ଅଭ୍ୟର୍ଥନା ଭିତରେ କ୍ୟାବାରେର ରୂପସୀ ନର୍ତ୍ତକୀ ଗୋଟି ଗୋଟି ଅଙ୍ଗବାସ ଫୋପାଡ଼ି ଦେଉଥିଲା ।

ଅନ୍ନ ନାହିଁ, ବସ୍ତ୍ର ନାହିଁ, ଶିକ୍ଷା ନାହିଁ, ଔଷଧ ନାହିଁ, ରହିବାକୁ କୁଡ଼ିଆ ନାହିଁ ।

କେବଳ ଚିତ୍କାର ! କ୍ଷୁଧାତୁରର ଅସହାୟ କାନ୍ଦଣା ! ଶାସକଦଳ ଦ୍ୱାରା ଜନସାଧାରଣ ପ୍ରତାରିତ । ଶାସକଦଳର ବଡ଼ପଣ୍ଡାଙ୍କ ହାତରେ ଶାସନ କଳଙ୍କିତ । ବଢ଼ି ଚାଲିଛି ଉପୁର ସାମ୍ରାଜ୍ୟ । ବଢ଼ି ଚାଲିଛି ଅତଳସ୍ପର୍ଶୀ

ଶୋଷଣ ! ଅବୈଧ ଦଳ ଶତଧା ବିଭକ୍ତ । ସେମାନଙ୍କର ରକ୍ତରେ ସଂଚିତ ଲୋଭର ପ୍ରଚୁର ବିଷାକ୍ତ ଜୀବାଣୁ !

ଶାସକଦଳତ୍ୟାଗୀ ବହୁ ଅସନ୍ତୁଷ୍ଟ ଜରଦ୍‌ଗବଙ୍କ ଅକ୍ଟୋପସ୍ ଆଲିଙ୍ଗନରେ କ୍ଷୁଦ୍ରଦଳଗୁଡିକ ଚଳତ୍‌ଶକ୍ତି-ରହିତ ।

ପଥ କାହିଁ ?

ସେଦିନ Indian Expressର ପାଠକ ପଢ଼ିଥିଲେ ଛୋଟ ଖବରଟିଏ । ଛୋଟିଆ ରାଜ୍ୟ ଓଡ଼ିଶାର ଶୋଷଣର ଘର କୋରାପୁଟ ଜିଲ୍ଲାରେ ଜଳିଉଠିଥିଲା : ଛୋଟ ଦୀପଟିଏ । ବହୁ ବର୍ଷର ସଂଗ୍ରାମ ପରେ ଆଦିବାସୀ ପୁଅ ହ୍ମମୀରବା ହଲାଇ ଦେଇଥିଲା କୋରାପୁଟକୁ ।

ବାଦ ଓ ଗୋଷ୍ଠୀର ରାଜ୍ୟ ଚଞ୍ଚଳ ହୋଇ ଉଠିଥିଲା । ପୁଞ୍ଜିଭୂତ ଅନ୍ଧାର ଗହ୍ୱରରେ ସଶଙ୍କିତ ସ୍ୱର ଶୁଣାଯାଇଥିଲା । ମନ୍ତ୍ରୀମାନେ ଧନୀ ସ୍ୱମସ୍ୱମାନଙ୍କ ସ୍ୱାର୍ଥରକ୍ଷା ପାଇଁ ବ୍ୟସ୍ତ ହୋଇ ଉଠିଥିଲେ ।

ଭୁବନେଶ୍ୱରରୁ ଗୁପ୍ତ ନିର୍ଦ୍ଦେଶ ଗଲା । ଭେଟେଭେନ୍‌ସାର ଗ୍ରାଜୁଏଟ ଆଦିବାସୀ ଯୁବକ ହ୍ମମୀରକାକୁ ଯେ କୌଣସି ମତେ ଜବତ କରିବା ପାଇଁ । କୋରାପୁଟର ତରୁଣ ଆଇ. ଏ. ଏସ୍., ଆଇ. ପି. ଏସ୍. ମାନେ ଚମକି ଉଠିଥିଲେ ।

ସେମାନେ ଅନୁଭବ କରିଛନ୍ତି ଅସହାୟ ଆଦିବାସୀର ଭାଷାହୀନ ଦୁଃଖକୁ

ସେମାନେ ଭେଟିଛନ୍ତି ଶିଳ୍ପପତିର ଅତିଥିଶାଳାରେ ଦଲାଲ ବେଶ ପାନରତ ମନ୍ତ୍ରୀମାନଙ୍କୁ ।

ବାରମ୍ବାର ସେମାନଙ୍କର ଫୋନ୍ ବାଜିଉଠିଛି । ଅସାମାଜିକ ବ୍ୟକ୍ତି ଓ ବ୍ୟବସାୟୀଙ୍କ ସପକ୍ଷରେ ମନ୍ତ୍ରୀ ଓ ଏମ୍. ଏଲ୍. ଏ. ଙ୍କର ଦର୍ପିତ ସ୍ୱର, ଫୋନ୍‌ରେ ଅନୁରୋଧ ଓ ଆଦେଶର ରାଗ ଆଳାପ କରିଛି ।

ସେମାନେ ସ୍ୱଦେଶ ପ୍ରେମୀ । ଆଦର୍ଶ ପ୍ରତି ସେମାନଙ୍କର ତରୁଣ ସୁଲଭ ଆକର୍ଷଣ ।

ଏ ଦେଶକୁ ସେମାନେ ଭଲପାଇଛନ୍ତି ନିବିଡ଼ ଭାବରେ ।

ହମୀରକାର ବନ୍ଧୁ ସାକେତ ଶର୍ମା ଅସମ୍ଭବ ବିଦ୍ୱାନ । ସାକେତ ଶର୍ମାଙ୍କ ସହ ଆଲୋଚନା କଲାବେଳେ ବୁଦ୍ଧିମାନ ଅଫିସରମାନେ ଆଶ୍ଚର୍ଯ୍ୟ ହୋଇଛନ୍ତି । ସମର୍ଥନ କରିଛନ୍ତି । ଶୋଷଣ ବିରୋଧ ଯୋଗୁଁ ସେମାନଙ୍କ ଠାରୁ କ୍ଷମତା କାଢ଼ି ନିଆଯାଇଛି । ସେମାନଙ୍କୁ ଅସୁବିଧାଜନକ ସ୍ଥାନମାନଙ୍କୁ ବଦଳି କରାଯାଉଛି ।

ତଳୁଆ ଅଫିସରଙ୍କ ସହାନୁଭୂତି ହେତୁ ହମୀରକାର କେଶାଗ୍ର ମଧ୍ୟ ସ୍ପର୍ଶ କରାଯାଇପାରିନି । ସାକେତ ଶର୍ମାଙ୍କ ସୁଦର୍ଶନ ପାତଳା ଦେହକୁ କାରାଗାରରେ ବନ୍ଦୀ କରାଯାଇ ପାରିନି ।

ତାପରେ ଦଳର ବରିଷ୍ଠ ଅଫିସରମାନଙ୍କ ସାହାଯ୍ୟରେ ହମୀରକାକୁ ମିଥ୍ୟା ମକଦ୍ଦମାରେ ପକାଇବାକୁ ଉଦ୍ୟମ ହୋଇଛି । ସାକେତ ଶର୍ମାଙ୍କ ବିରୁଦ୍ଧରେ ଗ୍ରନ୍ଥମାନଙ୍କୁ ବାଜ୍ୟାପ୍ତ କରାଯାଇଛି ।

କୋରାପୁଟ ମାତି ଉଠିଛି । ଲକ୍ଷ ଲକ୍ଷ ଆଦିବାସୀ ଜନତା ଚକ୍ଷୁରେ ବିଦ୍ରୋହର ଅଗ୍ନି କଣା ଝଲସି ଉଠିଛି ।

ସାକେତ ଶର୍ମାଙ୍କର ଲେଖା ବିଶିଷ୍ଟ ବୁଦ୍ଧିଜୀବୀଙ୍କର ଦୃଷ୍ଟି ଆକର୍ଷଣ କରିଛି ।

ଅଦୃଷ୍ଟ-ପୂର୍ବ ଗାନ୍ଧିବାଦୀ ଆନ୍ଦୋଳନ କୋରାପୁଟକୁ ଅଥୟ କରିଛି । ସାରା ଭାରତର ସ୍ୱାଧୀନଚେତା ସାମ୍ବାଦିକମାନେ କୋରାପୁଟର ଆଦିବାସୀ କୁଡ଼ିଆରେ ଦେଖା ଦେଇଛନ୍ତି । କୋରାପୁଟର ସମ୍ବାଦଗୁଡ଼ିକ ସାରା ଭାରତରେ ଆଲୋଡ଼ନ ସୃଷ୍ଟି କରିଛି । ସୁପ୍ରିମ କୋର୍ଟର କେତେକ ପ୍ରଖ୍ୟାତ ଆଇନଜୀବୀ ଦିଲ୍ଲୀ ଓ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟର ଛାତ୍ର ନେତାଙ୍କ ସହ କୋରାପୁଟକୁ ଆସିଛନ୍ତି ହମୀରକା ଓ ସାକେତ ଶର୍ମାଙ୍କ କାର୍ଯ୍ୟକଳାପ ଅନୁଧ୍ୟାନ କରିବାକୁ ।

କୋରାପୁଟ ଜିଲ୍ଲାର ରାୟଗଡ଼ା ସହରରେ 'ବିପ୍ଳବୀ ଜନଦଳର' ପ୍ରତିଷ୍ଠା ହୋଇଛି ।

ଦେଶର ଦୁଃଖ, ଦୁର୍ଦ୍ଦଶା, ଦୁର୍ଗତି ବକ୍ଷରେ ଏକ ପ୍ରକାଣ୍ଡ ନାଭି-ଦୈତ୍ୟର ଜନ୍ମ ରୋଦନ ଶୁଣାଯାଉଛି ।

ଅଫୁରନ୍ତ ଆହ୍ଲାଦର ବନ୍ୟା ଜଳ ମାଡ଼ି ମାଡ଼ି ଯାଉଛି । କୋଉଠି ଥିଲା ଏତେ ଶକ୍ତି ? କୋଉଠି ଥିଲା ଏତେ ଉଦ୍ଦାମ ଅଭିପ୍ସା ?

ଯୁଗ ଯୁଗ ଶୋଷଣର ପୀଡ଼ନରେ ଅସହାୟ ଭୀରୁ ମଣିଷର ପ୍ରାଣରେ କେଉଁଠି ଲୁଚିଥିଲା ଏତେ ସାହସ ? ରକ୍ତମୁଖା ହୋଇ ଉଠିଛି ସମସ୍ତ ଦଳ ଦଳିତଜନ । ଶାଳ ତାଳ-ନାଡ଼ିକେଳ ଭରା ପଲ୍ଲୀଗୁଡ଼ିକର ମଣିଷ ରକ୍ତ ମାଟିକୁ ସିକ୍ତ କରିଛି ।

ମେଘନାଦ ପାଚେରୀଘେରା କାରାଗାରର ଧୂଳିଭରା କୋଠରୀର ବନ୍ଦୀ ମଣିଷ ଗାଇ ଉଠିଛି

Stone walls do not a prison make
Nor iron bars a cage.

ହିଂସା ନାହିଁ, ରକ୍ତପାତ ନାହିଁ, ଘୃଣା ନାହିଁ, ଏକ ଶାନ୍ତ ସ୍ନିଗ୍ଧତା : ଏକ ଶୁଭ୍ର ଶୁଚିତା । ସାରା ଆନ୍ଦୋଳନକୁ ସୁରଭିତ କରିଛି ।

ଫେରି ଆସିଛି ୧୯୩୦ । ସ୍ୱାମୀଜୀଙ୍କର କଣ୍ଠରେ ବାଣୀ ଶୁଭିଛି ଭାରତ-ବର୍ଷର ନିପୀଡ଼ିତ ଆତ୍ମାର । ଭାରତର ଆକାଶରେ ପୁଣି ଶୁଣାଯାଉଛି ସେହି ଉଦାର ବାଣୀ ।

ପାଉଁଶ ତଳୁ ନିଆଁ ଦପକି ଉଠିଛି । ଡାଣ୍ଡି ସତ୍ୟାଗ୍ରହର ସ୍ମୃତିମୟ ଦିନ ଗୁଡ଼ିକର ପୁନରାବୃତ୍ତି ଘଟିଛି ।

ଦେଶର ଶାସନରେ ଗୋରା ନାହାନ୍ତି । ସାତ ସମୁଦ୍ର ତେର ନଈ ପାରିର ଏକ ସମ୍ରାଟ ଏ ଦେଶକୁ ନିୟନ୍ତ୍ରିତ କରୁନାହାନ୍ତି ।

ତଥାପି କ'ଣ ଏ ଦେଶର ଲୋକ ମଣିଷ ଭଳି ବଞ୍ଚିବାର ସୁଯୋଗ ପାଇଛି ?

ଦିଗ୍‌ବଳୟରୁ ଆଜି ମାତ୍ର ଆସୁଛି ଶୋଷଣ ଓ ଦୁର୍ନୀତିର ରକ୍ତଶୋଷା ପବନ । ପବନ ବହୁ ଆସୁଛି ଅତ୍ୟାଚାରର ଗଣି ଗଣି ଚାଲିଲା କାଳ ।

କୋଠାପରେ କୋଠା । ବଡ଼ ବଡ଼ ନଗରୀରେ ଆକାଶ ଛୁଇଁବା ଧନୀ ଲୋକଙ୍କର ବିଳାସ ଭବନ । ଝରଣ ବରଣ ଫାଇବ୍‌ଷ୍ଟାର ହୋଟେଲରେ ଉତ୍କଟ ବିଳାସ ଓ ଉଦ୍‌ଭଟ ପ୍ରାଚୁର୍ଯ୍ୟର ଦୃଷ୍ଟିକଟୁ ପ୍ରଦର୍ଶନୀ ।

ଦେଶସାରା ଘୁରିଯାଉଛନ୍ତି ଚୋରାମୋଗ୍‌ଲା ଦଳ ।

ଇଜ୍ଜତ ନାହିଁ ଏ ମାଟିରେ ଚଣ୍ଡକ ମଣିଷର ।

ଯୁଗ ଯୁଗର ଉଜ୍ଜ୍ୱଳ ପରମ୍ପରା ଓ ଅମଳିନ ସଂସ୍କୃତିର ବାହକ ଏଇ ଭାରତ ବର୍ଷ ।

ଅଦ୍‌ଭୁତ ଇତିହାସର କାହାଣୀ କହେ ଏ ଦେଶର ମାଟି ଓ ପଥର ।

ଅପୂର୍ବ ମାନବିକତାର ପ୍ରଚାର କରେ ଏ ମାଟିର ଧର୍ମ ଓ ସଂସ୍କୃତି ।

ଉଦ୍‌ଭ୍ରାନ୍ତ ଆବେଗ ନେଇ ବିଜୟୀ ଯୋଦ୍ଧା ଏ ଦେଶରେ ଗ୍ରାମାଂଚଳେ ଜଣଜଣ ମଣିଷଠ ଠକ ନରସଂହାର କଲେ ।

ପୃଥିବୀର ଆଉ କେଉଁ ଦେଶ ଜନ୍ମ ଦେଇପାରିଛି ଅଶୋକ ଭଳି ଏକ ଉଦାର କର୍ମୀ ପ୍ରଚାରୀ ସମ୍ରାଟଙ୍କୁ ?

ପୃଥିବୀର କେଉଁ ନାଟ୍ୟକାର ଲେଖିପାରିଛି 'ମୁଦ୍ରା ରାକ୍ଷସ' ଭଳି ଏକ କ୍ଷମାଧର୍ମୀ ସୁନ୍ଦର ନାଟକକୁ ?

ଆହତ ବଂଶ ଶତାବ୍ଦୀପାଇଁ ସର୍ବଶ୍ରେଷ୍ଠ କାର୍ଯ୍ୟ ବହନକରେ ଏଇ ସୁନ୍ଦର ନାଟକଟି ।

କୂଟ ନୀତିରେ ସାଗରଭଳି ଅତଳମସ୍ପ ଶକ୍ତିର ଅଧିକାରୀ ଚାଣକ୍ୟ । ଅମାପ ପ୍ରତିଜ୍ଞାର ବଶୀକରଣରେ ଯାହା ପ୍ରଶସ୍ତ ଲଲାଟ ।

ଚାଣକ୍ୟ ପ୍ରତିଜ୍ଞାର ଅଗ୍ନି ଶିଖା ମଧ୍ୟରେ ଲୁପ୍ତ ପ୍ରସିଦ୍ଧ ନନ୍ଦବଂଶ ।

ଭାରତର ରାଜନୈତିକ ଗଗନ ମେଘମୁକ୍ତ ।

ଚାଣକ୍ୟ-ଶିଷ୍ୟ ବୃଷଳୀପୁତ୍ର ଚନ୍ଦ୍ରଗୁପ୍ତ ଭାରତର ସମ୍ରାଟ ।

ଚାଣକ୍ୟ ଓ ଚନ୍ଦ୍ରଗୁପ୍ତଙ୍କର ପ୍ରଧାନ ଶତ୍ରୁ ନନ୍ଦ ଅମାତ୍ୟ ରାକ୍ଷସ ।

ଅସୀମ ପ୍ରତିଭା ପ୍ରଭୃତ ଉକ୍ତ ଗ୍ରନ୍ଥମାନଙ୍କର ।

ସୂର୍ଯ୍ୟ ଭଳି ତେଜସ୍ୱୀନ ଚାଣକ୍ୟଙ୍କର ସମସ୍ତ ଶକ୍ତି କେନ୍ଦ୍ରିତ ଗ୍ରନ୍ଥମାନଙ୍କ ପତନପାଇଁ ନୁହେଁ, ଗ୍ରନ୍ଥମାନଙ୍କର ହୃଦୟ ପରିବର୍ତ୍ତନପାଇଁ ।

ବିଶ୍ୱ ନାଟକ ମଣ୍ଡଳୀ ମଧ୍ୟରେ ମୁଦ୍ରାରାକ୍ଷସ ଏକ ବ୍ୟତିକ୍ରମ, ଏକ ବିସ୍ମୟ । ଗ୍ରୀକ୍ ଟ୍ରାଜେଡ଼ି ମଧ୍ୟରେ ଏ ସ୍ୱର ମିଳେନା ଯଦିଓ ସୋଫୋକଲ୍ସ, ୟୁରିପାଇଡ଼ସ୍, ଏସ୍କାଇଲସ୍ ପୃଥିବୀର ଅଗ୍ରଗଣ୍ୟ ନାଟ୍ୟକାର ।

ମିଳେନା ଏ ଅଦ୍ଭୁତ କଥା ବସ୍ତୁର ସଂଯୋଜନା ବିଶ୍ୱର ମୂର୍ଦ୍ଧନ୍ୟ କଳାକାର ସେକ୍ସପିଅରଙ୍କର ରଚନାବଳୀର ପୃଷ୍ଠାରେ । ଅଶୋକ, ଚାଣକ୍ୟ, ଗାନ୍ଧୀ । ଗୋଟିଏ ସୂତ୍ରରେ ଗ୍ରଥିତ ତିନୋଟି ବିଶ୍ୱବ୍ୟକ୍ତି, ତିନୋଟି ଯୁଗାନ୍ତର ପ୍ରତିଭା ।

ଭାରତର ଚିରନ୍ତନ ମାନସର ଅମୃତରେ ଏମାନେ ପୁଷ୍ଟ । ସାଧାରଣକୁ ଅସାଧାରଣ କରିବାର ଅପୂର୍ବ କ୍ଷମତା ବହନ କରେ ଏ ମାଟି ।

ତ୍ୟାଗ, ବଳିଦାନ ଯୁଗେ ଯୁଗେ, ଆବେଗାପ୍ଲୁତ କରିଛି ରାମାୟଣ, ମହାଭାରତର କ୍ଷୀରପୁଷ୍ଟ ଗ୍ରାମ୍ୟ ଜନତାକୁ । କିମ୍ବଦନ୍ତୀ, କାହାଣୀର ବେଶରେ ଦାବାନଳଭଳି ବ୍ୟାପିଗଲା । କୋରାପୁଟର ଚରମ ଆତ୍ମତ୍ୟାଗ ଓ ଦୃଢ଼ତାର ବାର୍ତ୍ତା ।

ତ୍ରିମୀରକା ଓ ସାଙ୍କେତ ଶର୍ମା ଦୃଷ୍ଟି ଆକର୍ଷଣ କରିଥିଲା ସାରା ଭାରତର ।

ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଗ୍ରନ୍ଥ ପୁନଃପୁନ ସନ୍ଧାନେ, ଭାରତର ଶ୍ରେଷ୍ଠ ଗ୍ରନ୍ଥ ବକ୍ତା ଗୌତମ ସିଂ ଅଭିଭୂତହୋଇ ଘୋଷଣା କଲେ, 'କୋରାପୁଟରେ ଏକ ନୂତନ ସୂର୍ଯ୍ୟ ଜନ୍ମ ନେଇଛି ଏବଂ ସେ ତାଙ୍କ ଜୀବନର ଶ୍ରେଷ୍ଠ ଅଧ୍ୟାୟଗୁଡ଼ିକ ଏଇ ସୂର୍ଯ୍ୟର ବନ୍ଦନା ଗାଇ ଗାଇ କଟାଇ ଦେବେ ।'

ମାଡ୍ରାଜ ବିଶ୍ୱବିଦ୍ୟାଳୟର ସ୍ୱର୍ଣ୍ଣ ପଦକଧାରୀ ନାସ୍ତିକ ରାମକୃଷ୍ଣନ ଆସିଥିଲେ 'ଦ ହିନ୍ଦୁ'ର ଲେଖାରେ ପ୍ରଲୁବ୍ଧ ହୋଇ । ତ୍ରିମୀରକା ଓ ସାକେତ ଶର୍ମାଙ୍କ ଆକର୍ଷଣକୁ ଏଡ଼ାଇ ପାରିଲେନି ସେ ।

ବଙ୍ଗଳାରୁ ଆସିଥିଲେ ୟୁସୁଫ୍ ଅଲି, ପ୍ରସିଦ୍ଧ ଆଲିଗଡ଼ ମୁସଲିମ ବିଶ୍ୱବିଦ୍ୟାଳୟର ଗ୍ରନ୍ଥ ।

ଏକାନ୍ତ ଭାବରେ ପ୍ରେମରେ ପଡ଼ିଯାଇଥିଲା ସେ ସୁମିତ୍ରିକା ଓ ସାକେତ ଶର୍ମାଙ୍କର ଆଦର୍ଶର ।

ବିପ୍ଳବୀ ଜନଦଳର ପ୍ରତିଷ୍ଠାବେଳେ ଉପହାସ କରିଥିଲେ କେତେ ଜଣ ବର୍ଷୀୟାନ ନେତା । ମନ୍ତବ୍ୟ ଦେଇଥିଲେ ସେମାନେ 'ମେଘ ବିହୀନ ବଜ୍ର ଭଳି ଏହାର ପ୍ରଭାବ କ୍ଷଣସ୍ଥାୟୀ ।'

ପଞ୍ଚତିରିଶ ବର୍ଷରୁ ଅଧିକ ବୟସର ଜଣେ ମଧ୍ୟ ନେତା ନଥିଲେ ବିପ୍ଳବୀ ଜନଦଳର । ତାରୁଣ୍ୟର ଆଲୋକରେ ଝଲମଲ କରି ଉଠୁଥିଲା ନୂତନ ଦଳଟି ।

ସେତୁବନ୍ଧ ନିର୍ମାଣକାରୀ ହନୁମାନ ଭଳି ସହସ୍ର ବିଘ୍ନ ମଧ୍ୟରେ ଶାଖା ବିସ୍ତାର କରି ଚାଲିଲା ବିପ୍ଳବୀ ଜନଦଳ । ସମସ୍ତ ବିରୋଧୀଦଳକୁ ନିଷ୍ପ୍ରଭ କରି ବହୁ ଆନ୍ଦୋଳନର ଅଗ୍ନି ପରୀକ୍ଷା ମଧ୍ୟରେ ଦଳ ମଧ୍ୟରେ ପ୍ରବେଶ କରିଥିଲା ଇସ୍ପାତ ଦୃଢ଼ତା ।

ନୂତନ ନିର୍ବାଚନର ଏକ ବର୍ଷ ପୂର୍ବରୁ ପ୍ରଧାନମନ୍ତ୍ରୀଙ୍କୁ ଶକ୍ତିଶାଳୀ ଗୁଇନ୍ଦା ସଂସ୍ଥା ଜଣାଇଦେଲେ । "ବିପ୍ଳବୀ ଜନଦଳର ଅପ୍ରତିହତ ଗତି ବିପଜ୍ଜନକ ।"

ଜନପ୍ରିୟତାର ବାରୋମିଟର ସୂଚନାଦେଲା ବିପ୍ଳବୀ ଜନଦଳର ଅସମ୍ଭବ ରୂପ ବୃଦ୍ଧିର । ଅଗ୍ନି ନିକ୍ଷିପ୍ତ ଘୃତଭଳି ସମସ୍ତ ପ୍ରକାର ଦମନ ବୃଦ୍ଧିକରି ଚାଲିଲା ବିପ୍ଳବୀ ଜନଦଳର ପ୍ରଭାବ ।

ତିନୋଟି ଉପନିର୍ବାଚନରେ ନିର୍ବାଚିତ ହୋଇ ଆସିଥିବା ତିନିଜଣ ତରୁଣ ସୃଷ୍ଟିକଲେ ପାର୍ଲ୍ୟାମେଣ୍ଟରେ ଇତିହାସ । ସେମାନଙ୍କର ଅକାଟ୍ୟ ଯୁକ୍ତି, ତୀବ୍ର ତଥ୍ୟ ସମ୍ବଳିତ ବକ୍ତୃତା ବାଗ୍‌ବିଳାସ ପାର୍ଲାମେଣ୍ଟରେ ସୃଷ୍ଟିକଲା ଘୂର୍ଣ୍ଣିବାତ୍ୟା । ବିପୁଳ ସଂଖ୍ୟା ଗରିଷ୍ଠତା ସତ୍ତ୍ୱେ ଗଳଦଘର୍ମ ହୋଇଉଠିଲେ ପ୍ରବୀଣ ମନ୍ତ୍ରୀମାନେ ।

ସାମ୍ବାଦିକମାନେ ଶତଜିହ୍ୱ ହୋଇଉଠିଲେ ତରୁଣ ସଭ୍ୟମାନଙ୍କ ପ୍ରଶଂସାରେ । ବିଭିନ୍ନ ବିଶ୍ୱବିଦ୍ୟାଳୟର ଅସଂଖ୍ୟ ଛାତ୍ରଗଣ ଆକର୍ଷିତ ହେଲେ ବିପ୍ଳବୀ ଜନଦଳ—ପ୍ରତି ।

ଆଜି ବିପ୍ଲବୀ ଜନଦଳ ବିପର୍ଯ୍ୟସ୍ତ । ପ୍ରତିଷ୍ଠାନ ପୂର୍ବରୁ ଭୂଲୁଣ୍ଠିତ ହୋଇଯାଇଛନ୍ତି ସୁନ୍ଦର କଳିକାଟି ।

ଏ କ'ଣ ଏକ ଏକ୍‌ସିଡ଼େଣ୍ଟ ?

ଏ ବିପର୍ଯ୍ୟୟରେ ଆକସ୍ମିକତାର ମାତ୍ରା କେତେ ଓ କୁଟିଳ ଷଡ଼ଯନ୍ତ୍ରର ମାତ୍ରା କେତେ, ସ୍ଥିର କରିପାରୁ ନଥିଲେ ଦଳର ତରୁଣ ଏମ୍‌. ପି. ମାନେ ।

ଶାସକ ଦଳର ଆନନ୍ଦ ଓ ଉଚ୍ଛ୍ୱାସର ମାତ୍ରା ବଢ଼ି ବଢ଼ି ଚାଲିଥିଲା ।

ବିପ୍ଲବୀ ଜନଦଳର ଦୁଇ ମୃତ ପ୍ରତିଷ୍ଠାତାଙ୍କୁ ପ୍ରାଣଖୋଲା ଶ୍ରଦ୍ଧାଞ୍ଜଳି ଜଣାଉଥିଲେ ଶାସକଦଳର ଅଗ୍ରଗାମୀ ନେତାମାନେ ।

ଜୀବନ କାଳ ମଧ୍ୟରେ ଶାସକ ଦଳର ସମାଧିପାଇଁ କଫିନ୍ ତିଆରି କରୁଥିଲେ ଯେଉଁ ଦୁଇଜଣ ନେତା, ମୃତ୍ୟୁ ସେମାନଙ୍କୁ ଆଣିଦେଇଥିଲା ଶାସକ ଗୋଷ୍ଠୀର ଆନୁଗତ୍ୟ ଓ ସ୍ୱୀକୃତି ।

ଭାରତର କୋଣେ କୋଣେ କଳା ଝଙ୍କାରେ ଗଢ଼ିଉଠୁଥିଲା ସେମାନଙ୍କର ପ୍ରତିମା ଗୁଡ଼ିକ ।

ସେମାନଙ୍କର ଅସଂଖ୍ୟ ତୈଳ ଚିତ୍ର ମଣ୍ଡନ କରିବା ଆରମ୍ଭ କରିଥିଲା ଦେଶର ବିଭିନ୍ନ ଅନୁଷ୍ଠାନର ମୁଖ୍ୟ କାର୍ଯ୍ୟାଳୟମାନଙ୍କୁ ।

ଶବ ପୂଜା ମଧ୍ୟରେ ସେମାନଙ୍କର ଆଦର୍ଶ ନିଃଶ୍ୱାସ ରୁଦ୍ଧ ହୋଇ ଯାଇଥିଲା ।

ସେପାରି ଜଗତରୁ ସେମାନେ ଯଦି ଆସିପାରିଥାନ୍ତେ, ସେମାନେ ଶାସକ ଦଳକୁ ନିଶ୍ଚୟ କହିଥାନ୍ତେ, 'ଏ କଣ କରୁଛ ତମେ ? ଗୀପଶିଖାଟିକୁ ଲିଭାଇ-ଦେଇ ପ୍ରାଳୀର ବନ୍ଦନା ଗାଇ ତମେ କ'ଣ ଲାଭ ପାଉଛ ?'

ହଁ, ସେମାନେ ଲାଭ ପାଇଥିଲେ ।

ସେମାନଙ୍କର ପ୍ରଥମ ଶିକାର ହୋଇଥିଲେ ଦେବବାଳା କୁମାରିକା । ଶାସକଦଳର ଉପନେତ୍ରୀ ପଦ ଅଳଙ୍କୃତ କରିଥିଲେ ସେ ।

ଦେବକାଳୀ ତନ୍ତ୍ରୀ । ଦେବକାଳୀ ବାଗ୍ମୀ ଶ୍ରମିକଙ୍କ ଧର୍ମପତ୍ନୀ ଭାବରେ ତାଙ୍କର ଜନପ୍ରିୟତା ଅତୁଳନୀୟ ।

ବିପ୍ଲବୀ ଜନଦଳର ଏକ ବିରାଟ କନ୍‌ଭେନସନ୍‌ରେ ଗର୍ଜି ଉଠିଥିଲେ ଗୌତମ ସିଂ ।

'ଦେବକାଳୀଦେବୀଙ୍କର ଦଳ ପ୍ରତି ବିଶ୍ୱାସ ଘାତକତାକୁ ଇତିହାସ କେବେ କ୍ଷମା ଦେବ ନାହିଁ ।'

ୟୁସୁଫ୍ ଓ ରାମକୃଷ୍ଣନ୍‌ଙ୍କ ଗଣ୍ଡଦେଶଦେଇ ବହି ଯାଉଥିଲା ଧାର ଧାର ଲୁହ । ଦୁଇ ଭାଗ ହୋଇଯାଉଥିଲା ବିପ୍ଲବୀ ଜନଦଳ । ଦଳର ଏକ ଶକ୍ତିଶାଳୀ ଗୋଷ୍ଠୀ ଆନୁଗତ୍ୟ ପ୍ରକାଶ କରିଥିଲେ ଦେବକାଳୀଙ୍କ ପ୍ରତି । ସେମାନେ ଯୁକ୍ତି କରିଥିଲେ ଶାସକ ଦଳ ହିଁ ମୃତ ନେତାଙ୍କ ଆଦର୍ଶ ଠିକ ଠିକ୍ କାର୍ଯ୍ୟକାରୀ କରିପାରିବ ।

ସାଧାରଣ ନିର୍ବାଚନ ବିପ୍ଲବୀ ଜନଦଳକୁ ଆଉ ଏକ ଶକ୍ତ ଝଟ୍‌କା ଦେଇଥିଲା ।

ୟୁସୁଫ୍, ରାମକୃଷ୍ଣନଙ୍କ ସମେତ ଦଳର ଅଧିକାଂଶ ନେତା ଶୋଚନୀୟ ଭାବରେ ପରାଜିତ ହୋଇଥିଲେ ।

ଦଳର ଚରମ ଦୁର୍ଦ୍ଦିନରେ ମଧ୍ୟ ଗୌତମ ଓ ତାଙ୍କର ବନ୍ଧୁମାନେ ସାହାସ ହରାଇ ନଥିଲେ ।

ବଦ୍ଧମୁଷ୍ଟି ଆକାଶକୁ ଉଠ୍ଲାଇକରି ଏମ୍. ପି. ଗୌତମ ସିଂ ଗାଇଉଠିଥିଲେ :

ତୋର ଆପନଜନ ଛାଡ଼ିବେ ତୋରେ
ତାବଲେ ଭାବନା କରା ଚଲବେ ନା
ତୋର ଆଶାଲତା ପଡ଼ିବେ ଛିଣ୍ଡେ
ହୟ୍ତ ତୋର ଫଲ ଫଲବେ ନା

ରାମ କୃଷ୍ଣନ୍ ଓ ୟୁସୁଫ୍ ପଦ ମିଶାଇଥିଲେ ।

ଆସ୍‌ବେ ପଥେ ଆଁଧାର ନାମେ
ତାଇ ବଲେକ ରଇବ ଥାମେ ।
ତୋରେ ବାରେ ବାରେ ଜ୍ୱଲତେ ହବେ
ହୟତୋରେ ବାତି ଜ୍ୱଲ୍‌ବେନା ।
ତାବଲେ ଭାବନା କରା ଚଲବେନା ।

ପଥ ବାଲୁକାମୟ ।

ଉପରେ ନିଷ୍ଠୁର ସୂର୍ଯ୍ୟ ।

ଦିଗନ୍ତ ବିସ୍ତୃତ ଶୁଷ୍କ ଭୂମିରେ ଜଳର ଦେଖାନାହିଁ ।

କ୍ୟାରାଭାନ୍ କ୍ଳାନ୍ତ । ବାହନ ମାନେ ଅଶାନ୍ତ ।

ତଥାପି ଆଗେଇବାକୁ ହି ପଡିବ ।

ଦେବକାନ୍ତଙ୍କ ଯୋଗଦାନ ଶାସକଦଳର ମଧ୍ୟରେ କୌଣସି ପରିବର୍ତ୍ତନ ଆଣିଲାନି ।

ଅନ୍ୟାୟ, ଦୁର୍ନୀତି, ମିଥ୍ୟାଚରଣ ଯେମିତି ଜୟଯାତ୍ରା ପଥରେ ଅଗେଇଚାଲି ପୂର୍ବଭଳି ।

ଦେବକାନ୍ତ ଦେଶଙ୍କର ସମସ୍ତ ଉଦ୍ୟମ ବିଫଳ ହୋଇଯାଇଥିଲା ।

ଶାସକଦଳର ଅତ୍ୟନ୍ତ କର୍ମଠ ମନ୍ତ୍ରୀ ଥିଲେ ସେ ।

ନିରାଡ଼ମ୍ବର ଜୀବନ ! ମଧୁର ବ୍ୟବହାର । ଚମତ୍କାର ବାଗ୍‌ବିଭବ ।

ବିରୋଧୀଙ୍କ ପ୍ରତି ସମ୍ମାନଜନକ ବ୍ୟବହାର ।

ଦୁର୍ନୀତିର ସାଗରରେ ସେ ଥିଲେ ଏକ ନୀତିର ଦ୍ୱୀପ ।

ବିପ୍ଳବୀ ଜନଦଳ ଶାସକଦଳର ଜନବିରୋଧୀ ନୀତିର ପ୍ରତିବାଦ କଲା ।

ଆନ୍ଦୋଳନର ପ୍ରଥମ ଆଲୋକ ଜଳି ଉଠିଥିଲା ଗାନ୍ଧୀ, ପଟେଲ, ଭବଶଙ୍କରଙ୍କର ଗୁଜରାଟରେ ।

ଘରେ ଘରେ ଜାଗିଉଠିଲା ସାରା ଭାରତବର୍ଷ ।

ଦଳିତଶ୍ରେଣୀ ଚକ୍ଷୁରେ ଥିଲା ନୂତନ ଚମକ ।

ଦୃଷ୍ଟିର ଗତିରେ ଦେଖା ଦେଉଥିଲା ନୂତନ ତେଜ ।

କଣ୍ଠ ଲେଉଟାଇଥିଲା ଯୁଗ ଯୁଗର ସ୍ୱପ୍ନ ଭଞ୍ଜନଙ୍କ ।

'ଏ ଦେଶରେ ଆମେ ବଞ୍ଚିବାକୁ ଚାହୁଁ ମଣିଷଭଳି ।'

'ଗାଁ'ର ଅସହାୟା ନାରୀ ପିଇବା ପାଣିପାଇଁ ଛ' ସାତ କିଲୋମିଟର ଚାଲିଲାବେଳେ, ତମ ପ୍ରାସାଦରେ ଛୁଟିଛି ମଦର ନଈ ।'

'କେତେ ଦିନ ଅନାହାର, ଅଶିକ୍ଷା ଓ ରୋଗର ଯନ୍ତ୍ରଣାରେ ଘୂରି ବୁଲୁଥିବୁ ଆମେ ?'

ଅସଂଖ୍ୟ ସ୍ଲୋଗାନ । ଅଗଣିତ ସ୍ୱର ।

ଶାସକଦଳର କେତେକ ବରିଷ୍ଠ ନେତା ବିଦେଶରୁ ପ୍ରଚୁର ଅର୍ଥ ଉତ୍କୋଚ ନେଇ ସୈନ୍ୟ ବିଭାଗପାଇଁ କିଣିଥିଲେ ନିମ୍ନମାନର ଉଡ଼ାଜାହାଜ ଓ ଟ୍ୟାଙ୍କ ଗୁଡ଼ିଏ ।

କେତେ ଜଣ ଅନୁସନ୍ଧାନୀ ସାମ୍ବାଦିକ ଏ ସମ୍ପର୍କରେ ତଥ୍ୟ ଭିତ୍ତିକ କେତେକ ଲେଖା ପ୍ରକାଶ କଲେ ସମ୍ବାଦ ପତ୍ରରେ ।

ପାର୍ଲ୍ୟାମେଣ୍ଟରେ ଘୂର୍ଣ୍ଣିବାତ୍ୟା ସୃଷ୍ଟି କଲେ ଗୌତମ ସିଂହ ।

ଭାରତସାର ବିପ୍ଳବୀ ଜନଦଳର କର୍ମୀମାନେ ଡାକରାଦେଲେ ସତ୍ୟାଗ୍ରହର ।

ଶାସକଦଳର ଦମନଲୀଳା ଜନସାଧାରଣଙ୍କୁ ଉତ୍ତେଜିତ କଲା । ପାଖେଇ ଆସିଲା ଆଉ ଏକ ସାଧାରଣ ନିର୍ବାଚନର ଦିନ ।

ହଠାତ୍ ଦିନେ ରେଡ଼ିଓ ଘୋଷଣା ଶୁଣାଗଲା 'ଦେବବାଳା ସ୍ୱମୀରବା ରାଜନୀତିରୁ ଅବସର ନେବେ ବୋଲି ଘୋଷଣା କରିଛନ୍ତି ।'

ଶାସକ ଦଳର ସମସ୍ତ ନେତା ଏ ଘୋଷଣା ପ୍ରତ୍ୟାହାର କରିବାପାଇଁ ଅନୁରୋଧ ଜଣାଇଲେ ଦେବବାଳା ଦେବୀଙ୍କୁ, କିନ୍ତୁ ଦେବବାଳା ଥିଲେ ତାଙ୍କ ନିଷ୍ପତ୍ତିରେ ଅଟଳ ।

ପ୍ରାଣମୂର୍ଚ୍ଛା ନିର୍ବାଚନ କରେଇବାପାଇଁ ପ୍ରସ୍ତୁତ ହେଲା ଶାସକଦଳ ।

ଟଙ୍କା, ଗୁଣ୍ଡା, ଶାସନକଳ : ସମସ୍ତ ଶକ୍ତି ଶାସକଦଳ ପ୍ରୟୋଗ କଲା ନିର୍ବାଚନ ଜିତିବାପାଇଁ ।

ଭାବପ୍ରବଣ ଭାରତୀୟ ଜନତା ଶୋଚନୀୟ ଭାବରେ ପ୍ରତ୍ୟାଖ୍ୟାନ କଲା ଶାସକ ଦଳକୁ ।

ଦଳର ପ୍ରସିଦ୍ଧ ରଥୀ, ମହାରଥୀମାନଙ୍କୁ ଗ୍ରାମ୍ୟ ଜନସାଧାରଣ ପୋଚାଡ଼ି ଦେଇଥିଲେ ଇତିହାସର ଅଳିଆଗଦାରେ ।

ସ୍ତମ୍ଭୀତ ହୋଇଯାଇଥିଲା ସମଗ୍ର ପୃଥିବୀ ନିରକ୍ଷର ଜନତାର ପୋଖତ ବୁଦ୍ଧି ଶକ୍ତିର ପରିଚୟ ପାଇ ।

ବିପ୍ଳବୀ ଜନଦଳର ଅଖ୍ୟାତ କର୍ମୀମାନେ ମଧ୍ୟ ଜନତାର ରୋଷ ଯୋଗୁଁ ଶକ୍ତିଶାଳୀ ଶାସକଦଳର ନେତାମାନଙ୍କୁ ହରାଇ ପାରିଥିଲେ ।

କି ଚମତ୍କାର ଥିଲା ସେ ଦିନ ଗୁଡ଼ିକ । ସେତେବେଳେ ସିନିକ୍‌ର ସନ୍ଦେହୀ ଆଖିରେ ମଧ୍ୟ ଚମକର ଅପୂର୍ବ ଆଭା ପରିଲକ୍ଷିତ ହୋଇଥିଲା । ଏକ ମହାନ୍ ଦେଶର ଉଦାସୀ ଆତ୍ମା ହଠାତ୍ ଜାଗ୍ରତ ହୋଇ ଆଗ୍ରହ ଓ ଆନନ୍ଦ ସହକାରେ ନୂତନକୁ ସ୍ୱାଗତ କରିଥିଲା । ହଜାର ହଜାର ବର୍ଷର ସ୍ୱଚ୍ଛ ପରମ୍ପରାର ସ୍ରୋତ ସ୍ୱାର୍ଥପରତାର ଆବର୍ଜନାକୁ ହଟାଇ କଳ କଳ ଗତିରେ ମାତି ଚାଲିଗଲା ।

ତିନି ବନ୍ଧୁ ସ୍ତମ୍ଭୀତ ଥିଲେ । ଅତୀତର ସାଧନା-ମୁଦ୍ରାଙ୍କିତ କଣ୍ଟକିତ ଦିନଗୁଡ଼ିକ ସେମାନଙ୍କର ସ୍ମୃତିରେ ଉଦ୍‌ଭାସିତ ହୋଇ ଉଠୁଥିଲା ।

ସ୍ୱାମୀଜୀ ଓ ସାକେତ ଶର୍ମାଙ୍କର ଦୁଇଟି ପୂର୍ଣ୍ଣାବୟବ ତୈଳଚିତ୍ର ପାର୍ଟି ଅଫିସର ମୁଖ୍ୟ କକ୍ଷକୁ ଶୋଭିତ କରୁଥିଲା । ପାର୍ଟିର କର୍ମୀମାନେ ନୀରବରେ ଦୁଇଟି ଚିତ୍ରର ପାଦ ଦେଶରେ ପୁଷ୍ପ ଅର୍ପଣକରି ଚାଲି ଯାଉଥିଲେ ।

ପାର୍ଟିର ଅଧିକାଂଶ ସଭ୍ୟଙ୍କ ଆଖି ଲୁହରେ ଭରିଯାଇଥିଲା ।

ସାକେତ ଶର୍ମାଙ୍କ ମୃତ୍ୟୁ ଅସ୍ୱାଭାବିକ ଭାବରେ ଘଟିଥିଲା । ଶ୍ରୀବାକୁଲମର ଶସ୍ୟ କ୍ଷେତରେ ତାଙ୍କର ଦେହ ବପୁକୁ ଷୋଳଟ ଗୁଳି ଭେଦ କରିଥିଲା । ତାଙ୍କର ଦେହ ଓ ମୁହଁ ଏତେ ବିକୃତ ହୋଇଯାଇଥିଲା ଯେ ତାଙ୍କୁ ଚିହ୍ନିବା ତାଙ୍କ ପରିବାରର ଲୋକଙ୍କ ପକ୍ଷରେ ମଧ୍ୟ ସମ୍ଭବ ହୋଇନଥିଲା । କେବଳ ବିବାହ ମୁଦ୍ରିକାର ଉପସ୍ଥିତି ହିଁ ତାଙ୍କ ପରିଚୟକୁ ପ୍ରମାଣିତ କରିଥିଲା ।

ସାକେତ ଶର୍ମା ଆତଙ୍କବାଦର ରାସ୍ତାକୁ ପସନ୍ଦ କରୁନଥିଲେ । ସାଧାରଣ ଜନତାର ଜାଗରଣ ବିନା ଭାରତର ଯେ ଉଦ୍ଧାର ନାହିଁ, ଏଥିରେ ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ତେଣୁ ତାଙ୍କର ଆତଙ୍କବାଦୀ ଶିବିରରେ ମୃତ୍ୟୁ ବରଣ ଦଳ ପକ୍ଷରେ ଅବିଶ୍ୱାସ୍ୟ ସମ୍ବାଦ ଥିଲା ।

ନବଗଠିତ ପରିବେଶରେ ଗୌତମ ସିଂ ଓ ଅନ୍ୟମାନେ ଶପଥ ଗ୍ରହଣ ଉତ୍ସବ ସାଙ୍ଗ କରିଥିଲେ । ଶପଥ ଗ୍ରହଣର କିଛି ସମୟ ପରେ ପ୍ରଧାନମନ୍ତ୍ରୀ ଗୌତମ ସିଂ ଦେବବାଳା ଦେବୀଙ୍କର ଜଣେ ବିଶ୍ୱସ୍ତ କର୍ମଚାରୀଠାରୁ ଏକ ସିଲ୍ କରା ମୁଣିଟିଏ ପାଇଥିଲେ । ମୁଣି ଉପରେ 'ଏକାନ୍ତ ବ୍ୟକ୍ତିଗତ' ଓ 'ଜରୁରୀ' ଏଇ ଦୁଇଟି ଶବ୍ଦ ନାଲି ଅକ୍ଷରରେ ଲେଖା ଯାଇଥିଲା ।

ପ୍ରଧାନ ମନ୍ତ୍ରୀ ଲଫାଫାଟି ଖୋଲି ଚିଠି ପଢ଼ି ଚମକି ପଡ଼ିଲେ । ଦେବବାଳା ଦେବୀଙ୍କର ଚିଠିଟିରେ ଚରମ ରହସ୍ୟ ତାଙ୍କପାଇଁ ଅପେକ୍ଷାକରି ରହିଥିଲା ।

ଅଳ୍ପ ସମୟପରେ ବନ୍ଧୁକଧାରୀ ଜନତାଙ୍କର ଭିଡ଼ ଭୁଙ୍ଗ ନେତାଙ୍କୁ ବହନ କରି ଗୋଟିଏ କାର୍ କୌଣସି ଅଜ୍ଞାତ ସ୍ଥାନ ଉଦ୍ଦେଶ୍ୟରେ ଛୁଟିଗଲା ।

ପୂର୍ବତନ ଘରୋଇ ମନ୍ତ୍ରୀ ଦେବବାଳା ଦେବୀଙ୍କର ଚିଠିଟି ୟୁସୁଫ୍‌ଙ୍କ ହାତରେ ଥିଲା । ଚିଠିଟି ତାଙ୍କୁ ଦେଲାବେଳେ ପ୍ରଧାନ ମନ୍ତ୍ରୀଙ୍କ ଆଖିରେ ଲୁହ ଥିଲା ଓ କଣ୍ଠରେ ଭାଷା ନଥିଲା, ଚିଠିଟି ପଢ଼ି ୟୁସୁଫ୍ ଓ ରାମକୃଷ୍ଣନ ସ୍ତବ୍ଧ ହୋଇଗଲେ । ଚିଠିଟିରେ ଲେଖାଥିଲା :—

ଶ୍ରଦ୍ଧେୟ ଗୌତମ,

ଏ ଚିଠି ପାଇଲା ବେଳକୁ ମୁଁ ଜୀବନରେ ନଥିବି । ଆତ୍ମହତ୍ୟା ଛଡ଼ା ମୋ ପକ୍ଷରେ ଅନ୍ୟ କୌଣସି ରାସ୍ତା ନଥିଲା ।

ଖ୍ରୀଷ୍ଟିୟାନମାନେ ମୃତ୍ୟୁ ପୂର୍ବରୁ ସମସ୍ତ ପାପ ଅକପଟ ଚିତ୍ତରେ ସ୍ୱୀକାର କରିଥାନ୍ତି । ମୁଁ ହିନ୍ଦୁ ହେଲେ ମଧ୍ୟ ଖ୍ରୀଷ୍ଟିୟାନଙ୍କ ଭଳି ମୋର କଳଙ୍କିତ ଜୀବନର ପାପୀ ଅଧ୍ୟାୟଗୁଡ଼ିକୁ ତମ ନିକଟରେ ଉନ୍ମୋଚିତ ନକରି ମୃତ୍ୟୁ ବରଣ କଲେ ମୋର ଆତ୍ମା ଶାନ୍ତି ପାଇପାରିବନି । ତେଣୁ ମୋର ଜୀବନୀ ମୁଁ ତୁମ ହସ୍ତରେ ଅର୍ପଣ କଲି ।

ମଣିଷ ପରିସ୍ଥିତିର ଦାସ । ମୁଁ ମଧ୍ୟ ଏକ ଜଘନ୍ୟ ପରିସ୍ଥିତିର ଶିକାରହୋଇ ବହୁ ଅପରାଧ କରିଛି ।

ଛାତ୍ରୀ ଜୀବନରେ ମୋର ବହୁ ସୁନ୍ଦର ସ୍ୱପ୍ନ ଥିଲା । ସେ ସବୁ ରଙ୍ଗିନ ସ୍ୱପ୍ନ ଏକ ନିଷ୍ଠୁର ହସ୍ତର ଶକ୍ତ ଆଘାତରେ ଚୂରମାର ହୋଇଯାଇଛି ।

'The Rebel'ର ସମ୍ପାଦକ ସାକେତ ଶର୍ମା ବଂଚିଛନ୍ତି । ସରୋଜ ବାବୁଙ୍କର ଗୁପ୍ତ କକ୍ଷର ତିନି ନମ୍ବର ସେଫ୍‌ର ଉପର ଥାକରେ ତାଙ୍କ ସମ୍ପର୍କରେ ସଠିକ୍ ବିବରଣୀ ରହିଛି । ତମେ ତାଙ୍କୁ ଉଦ୍ଧାର କର । ମୋର ଡାଏରୀଟି ଠିକ୍ ସମୟରେ ତମେ ପାଇବ ।

ଯେଉଁଦିନ ବଞ୍ଚିଥିଲି ଘୃଣାରେ ଜୀବନ୍ତ ଦହନ ଓ ଜ୍ୱାଳା ନେଇ ବଞ୍ଚିଥିଲି ।

ମୋ ପାପର ପ୍ରାୟଶ୍ଚିତ ନାହିଁ । ବିଦାୟ ବେଳାରେ ମୋତେ କ୍ଷମା କରିବ ଓ ତମର ବନ୍ଧୁମାନଙ୍କୁ ମୋତେ କ୍ଷମା କରିବାକୁ କହିବ ।

ହତଭାଗିନୀ

ଦେବଜାନୀ

ଉଚ୍ଛ୍ୱସିତ ଭାବନାରେ ଭାଙ୍ଗିପଡ଼ୁଥିଲା ହୃଦୟ । ତଥାପି ପଥରପରି ବସି ରହିଥିଲେ ଭିନି ବନ୍ଧୁ । ବିପ୍ଳବୀ ଜନଦଳର ସାଫଲ୍ୟରେ କିଛିଟା ଅଂଶ ନିହିତ ଭାବରେ ଥିଲା ଦେବଜାନୀ ଦେବୀଙ୍କର ।

ସରକାରଙ୍କର ଏକ ରକ୍ତମୁଖା ବିଭାଗକୁ ବହୁ ପରିମାଣରେ ସହନଶୀଳ କରିପାରିଥିଲେ ସେ । ତାଙ୍କ ସମୟରେ ଅବସ୍ତ୍ରରିତ ଗୁଳିକାଣ୍ଡ ଘଟଣା ଖୁବ୍ କମ୍ ଘଟିଥିଲା । ଅତି ଦକ୍ଷତା ଓ ନିଷ୍ଠାର ସହିତ ସେ ତାଙ୍କର ବିଭାଗ ପରିଚାଳନା କରିଥିଲେ । ଆନ୍ଦୋଳନକାରୀଙ୍କ ପ୍ରତି ତାଙ୍କର ସହାନୁଭୂତି

ଦଳର ବଡ଼ ପଣ୍ଡାଙ୍କର ଚକ୍ଷୁଃଶୂଳ ଥିଲା କିନ୍ତୁ ତାଙ୍କର ଚରମ ଦକ୍ଷତା ଓ ଜନପ୍ରିୟତା ଯୋଗୁଁ ପ୍ରଧାନମନ୍ତ୍ରୀ ତାଙ୍କୁ ମନ୍ତ୍ରୀ ମଣ୍ଡଳରୁ ବିଦାୟ ଦେଇପାରି ନଥିଲେ ।

ଏକ ସୁଦୃଶ୍ୟ କୋଠା ଆଗରେ କାରଟି ରହିଲା । ଘର ଭିତରର କାନ୍ଦଣାର ସ୍ୱର ବାୟୁ ମଣ୍ଡଳକୁ କାରୁଣ୍ୟଭରା କରିଥିଲା । ବାହାରେ ଶୋକାକୁଳ ଜନତାର ଭିଡ଼ ବଢ଼ି ବଢ଼ି ଚାଲିଥିଲା ।

ମୃତ୍ୟୁ ମନ୍ତ୍ରମାନଙ୍କ ଲାଭ କରିଥିବା ସେହି ଦୁଃଖୀ ନାରୀର ଦେହଟିକୁ ଜନତା ଉତ୍କଣ୍ଠିତ ଭାବରେ ନିରୀକ୍ଷଣ କରିବାକୁ ଲାଗିଲେ ।

ଦେବବାଳା ଦେବୀଙ୍କର ଠିକ୍ ମୁଣ୍ଡ ପାଖରେ ସ୍ୱାମୀଙ୍କର ଏକ ପୁଷ୍ପହାର ମଣ୍ଡିତ ପ୍ରକାଣ୍ଡ ଫଟୋଚିତ୍ର ରହିଥିଲା ।

ଦେବବାଳା ଏକାନ୍ତ କ୍ୟାମେରାଠାରୁ ଦୂରରେ ଥିଲେ । ଜଣଙ୍କରେ କୌଣସି ଦାମୀ ଅଳଙ୍କାର ନଥିଲା ।

ଦେବବାଳା ଦେବୀଙ୍କର ଶେଷଇଚ୍ଛା ଅନୁସାରେ ତାଙ୍କ ଶବକୁ ଇଲେକ୍ଟ୍ରିକ୍ ଚୁଲ୍ଲୀରେ ଦାହ କରାଯାଇଥିଲା । ସମଗ୍ର ଦିଲ୍ଲୀ ସହର ଏକ ମନ୍ତ୍ରପୂର୍ବ ନାରୀଙ୍କ ବିଦାୟରେ ସ୍ତବ୍ଧ ହୋଇ ପଡ଼ିଥିଲା । ଦେଶର ସମସ୍ତ ଖବର କାଗଜ ତାଙ୍କର କାର୍ଯ୍ୟକଳାପର ଭୂୟସୀ ପ୍ରଶଂସାକରି ସମ୍ପାଦକୀୟ ଲେଖିଥିଲେ ।

ମନ୍ତ୍ରୀମାନେ ଶପଥଗ୍ରହଣ କରିବା ଦିନ ରାତି ଏଗାରଟା ବେଳେ ଗ୍ୱାଲିୟରର ଏକ ଗୁପ୍ତଜେଲର ଦାୟିତ୍ୱରେ ଥିବା ଅଫିସର ଗୋଷ୍ଠୀ ଉପସ୍ଥିତ ହୋଇ ଗଲେ । ସ୍ୱୟଂ ପ୍ରଧାନମନ୍ତ୍ରୀ ଗୌତମ ସିଂ ଅତ୍ୟନ୍ତ ସ୍ୱାଭାବରେ ଜେଲ୍ ରକ୍ଷକର ସହ ଚାରି ନମ୍ବର କୋଠରୀ ଆଡ଼େ ଚାଲିବାକୁ ଲାଗିଲେ । ଚାରି ନମ୍ବର କୋଠରୀର ତାଲାକୁ ଶବ୍ଦକରି ଖୋଲାଗଲାପରେ ଗୌତମ ଡାକିଲେ 'ସାର୍' ।

କଙ୍କାଳସାର ବନ୍ଦୀଟି ଚମକିପଡ଼ି କହିଲା, 'କିଏ ? କାହା ସ୍ୱର ମୁଁ ଶୁଣୁଛି ?'

'ମୁଁ ଗୌତମ ସାର୍ । ୟୁସୁଫ୍ ଆଉ ରାମକୃଷ୍ଣନ୍ ମଧ୍ୟ ଆସିଛନ୍ତି ।'
'ଗୌତମ୍ । ୟୁସୁଫ୍ । ରାମକୃଷ୍ଣନ୍ ତମେମାନେ ଆସିଛ' ।

ତାଙ୍କ ଆଖିରୁ ଲୁହ ଗଡ଼ିପଡ଼ିଲା । ତାପରେ ହଠାତ୍ ସେ ଭ୍ରୂକୁଞ୍ଚନ କଲେ । ସେ ବିଶ୍ୱାସ କରିପାରୁ ନ ଥିଲେ ଯେ ଏତେ ବଡ଼ ଅଦ୍ଭୁତ କଥା ସମ୍ଭବ ହୋଇପାରିଛି ।

'ମୁଁ ସ୍ୱପ୍ନ ଦେଖୁନି ତ ?'

'ନା ସାର୍ । ଆପଣ ସ୍ୱପ୍ନ ଦେଖୁନାହାନ୍ତି । ଆମଦଳ, ଆପଣଙ୍କର ବିପ୍ଳବୀ ଦଳଦଳ, କ୍ଷମତା ଦଖଲ କରିଛି !'

ତମେ......, ଆମଦଳ କ୍ଷମତା ଦଖଲ କରିଛି ?

ଜେଲ ଡାକ୍ତର ଆଗେଇ ଆସି କହିଲେ, 'ଦୟାକରି ଆଉ କିଛି କହନ୍ତୁ ନାହିଁ ।'

ସାନ୍ତେଶର୍ମା ଥରଥର ଥରୁଥିଲେ । ଡାକ୍ତର ଓ ଅନ୍ୟମାନେ ଧରାଧରି କରି ତାଙ୍କୁ ତାଙ୍କ ଶେଯରେ ଶୁଆଇ ଦେଲେ । ସେ କିଛି କହିବାପାଇଁ ଚାହୁଁଥିଲେ କିନ୍ତୁ କହି ପାରୁନଥିଲେ । ବହୁ କଷ୍ଟରେ ସେ ତକିଆ ତଳକୁ ଅଙ୍ଗୁଳି ନିର୍ଦ୍ଦେଶ କଲେ ।

ଗୌତମ ମୁଣ୍ଡରେ ହାତ ଦେଇ ତାଙ୍କ ପାଦତଳରେ ବସିପଡ଼ିଲେ । ଡାକ୍ତର ତାଙ୍କର ଶିରା ଓ ହୃତ୍‌ପିଣ୍ଡ ପରୀକ୍ଷାକରି କହି ଉଠିଲେ 'ସବୁ ଶେଷ' ।

ଏକ ମହାର୍ଘ ବିପ୍ଳବୀ ଜୀବନର ଅବସାନ ହୋଇଯାଇଥିଲା । ରାମକୃଷ୍ଣନ୍ ଶର୍ମାଙ୍କର ଇଙ୍ଗିତ ଅନୁଯାୟୀ ତକିଆକୁ ସାମାନ୍ୟ ଉଠାଇ ତାର ତଳେ ଥିବା ପାଣ୍ଡୁଲିପିକୁ ଆବିଷ୍କାର କଲେ ।

ଭାରତରେ ଗୋଟିଏ ଯୁଗର ସମାପ୍ତି ଘୋଷିତ ହୋଇଥିଲା । ପ୍ରବଞ୍ଚନା, ଗୁଣ୍ଡାବାଦ, ହତ୍ୟା ଓ ଲୁଣ୍ଠନର ଏକ ଅଧ୍ୟାୟ ଶେଷ ହୋଇଯାଇଥିଲା । ବିଗତ ଯୁଗର ଭୟାବହ ଅତୀତ କାହାଣୀ ଦୁଇଟି ପାଣ୍ଡୁଲିପିରେ ଲିପିବଦ୍ଧ ଥିଲା । ବିପ୍ଳବୀ ଦଳଦଳର ସଭ୍ୟମାନେ ଦୁଇଟି ପାଣ୍ଡୁଲିପି ମଧ୍ୟରେ କ'ଣ ଲେଖା ରହିଛି ଜାଣିବାପାଇଁ ବ୍ୟାକୁଳ ହୋଇପଡିଥିଲେ ।

# ସାକେତ ଶର୍ମାଙ୍କ ଡ଼ାଏରୀ

*And let me speak to th' yet unknowing world*
*How these things came about, so shall you know*
*of carnal, bloody and unnatural acts............*

—Shakespeare

ଏ ପର୍ଯ୍ୟନ୍ତ କିଛି ଜାଣିନଥିବା ପୃଥିବୀର ଲୋକଙ୍କୁ
ମୁଁ କହୁଛି କେମିତି ଏ ସବୁ ଘଟିଗଲା
ତାହେଲେ ତମେ ଜାଣିପାରିବ
କାମଲାଳସା ଯୁକ୍ତ ରକ୍ତାକ୍ତ, ଅପ୍ରାକୃତିକ ଘଟଣାଗୁଡ଼ିକ ବିଷୟରେ……

—ସେକ୍ସପିଅର

ହେ ଅସହାୟ ମେଷଶାବକମାନେ ! ମୁଁ ତମକୁ ଘୃଣା କରେ । ମୋର ଏ ଲେଖା ତମପାଇଁ ନୁହେଁ । ତମ ଆଖିର ଲୁହରେ କେଉଁ ସ୍ୱର୍ଣ୍ଣଲଙ୍କା ଭସ୍ମ ହେବନି କିମ୍ବା ସ୍ୱର୍ଗରାଜ୍ୟ ଏ ପୃଥିବୀ-ବକ୍ଷରେ ଓହ୍ଲାଇ ଆସିବନି । ନିଃସ୍ୱତା ପାଞ୍ଚାଳୀକୁ ଅଣ୍ଟ ବେଣୀରେ ତମେ ଦେଖୁଥିବ । ଦୀର୍ଘଶ୍ୱାସ ଛାଡ଼ିବାର ଦେଖିପାର କିମ୍ବା ମାଧୁରୀଭରା ରଜନୀରେ ତାର କଣ୍ଠ ତଳର ମଧୁର ଗନ୍ଧକୁ ମନେ ମନେ ଆଘ୍ରାଣ କରିପାର କିନ୍ତୁ ତମେ କେବେ ଉରୁଭଙ୍ଗର ଶପଥ ନେଇ ପାରିବନି ।

ତମ ମଣ୍ଡପରେ ଶଙ୍ଖର କମ୍ପିତ ଲହରରେ ସନ୍ଧ୍ୟାର ମୂର୍ଚ୍ଛାର ପର୍ଦ୍ଦା ଉଠୁଥାଏ । ତମ ପ୍ରାର୍ଥନା ଭଜନର ରଙ୍ଗିନ ପୃଷ୍ଠା ଭିତରେ ମଣିଷପଣିଆ ମରେ ଅମୃତତା ।

ବିପ୍ଲବର ପ୍ରସବବେଦନା କେବେ ତମେ ସହିପାରିବନି । ତମ ମଧ୍ୟବିତ୍ତୀୟ ମନ ଓ ପାଠୁଆ ବୁଦ୍ଧିର ପଙ୍କ ନର୍ଦ୍ଦମାରେ ଘୂରି ବୁଲନ୍ତି କେବଳ କେତେକ ସ୍ୱାର୍ଥପରତାର ଲାଙ୍ଗୁଡ଼ିଆ ପୋକ ।

ମୁଁ ଆଜି ହୃଦୟର ପାପର ଢାଙ୍କୁଣି ଖୋଲିଦେବି । ଦୁର୍ଜନା ସଭ୍ୟତାର ସେହି ଭୟଙ୍କର କ୍ରୋଧ ରୂପକୁ ମୁଁ ତମ ଆଗରେ ଥୋଇଦେବି ।

ଓ୍ୱାର୍ଡରର ପାଦ ଧ୍ୱନି ଶୁଣାଗଲାଣି । ମୋତେ ଏ ସବୁ କାଗଜ ଲୁଚାଇ ଦେବାକୁ ପଡ଼ିବ ।

ଓ୍ୱାର୍ଡର୍ ଚାଲିଗଲାଣି । ବାହାରେ ବର୍ଷାର ପଦଧ୍ୱନି । ବର୍ଷା କି ସୁନ୍ଦର ! ଭିଜା ଭିଜା ଘାସ, ପତ୍ରର ଅମାପ ଆଶ୍ୱସ୍ତି ଓ ଆନନ୍ଦର ବାର୍ତ୍ତାବହ ଆକାଶର କଳା କଳା ମେଘ । ବାଉଁଶ, ନଡ଼ିଆ, ତାଳ ବେଷ୍ଟିତ ମୋର ଛୋଟିଆ ଗାଁରେ ପାଣି ବହି ଯାଉଥିବ କୁଳୁକୁଳୁ କୁଳୁକୁଳୁ । ବାଡ଼ିର ସଜନା ଗଛ, ଲେଉଟିଆ କିଆରି ଉପରେ ହର୍ଷର ଜୁଆର ଛୁଟୁଥିବ । ନା, ମୋପାଇଁ ଆଜି ବର୍ଷା ଆଣିବନି ଆନନ୍ଦର ବାର୍ତ୍ତା । ବାହାରର ପବନକୁ ମଧ୍ୟ ମନା କରାଯାଇଛି

ମୋ ସନ୍ତତି ମିଳିବାପାଇଁ । ମୁଁ କୁଆଁଜ୍ଞ ସଂଘାତକ ଅପରାଧୀ । ମୋ ପୁଣି କୁଆଁଡ଼ େ ଆଲୁଅ ଓ ପବନକୁ ଭୟକ କଲଙ୍କିତ ।

କୋଉ, ତୁ କଣ ଭାବପାରୁଥିବୁ ତୋ ପୁଅ କେଉଁଠି ଅଛୁ ? ପୋଲିସ ଗୁଳିରେ ତୋ ପୁଅ ମରିଚି ବୋଲି ତୁ ଯେଉଁ ଦିନ ସମ୍ବାଦ ପାଇଥିବୁ, ସେଦିନ ତୋ ଘରେ ପବନ ମଧ୍ୟ ନିସ୍ପନ୍ଦ ହୋଇଯାଇଥିବ । ତୋ ପାଚଗାଇ ଆଖିରୁ ମଧ୍ୟ ବରକୋଳିଆ ଟୋପା ଖସି ପଡ଼ିଥିବ । ଆଉ ସଞ୍ଜବତୀର ଜହଁଳ ଆଲୁଅ ପାଖରେ ତୋର ମୂର୍ଚ୍ଛିତ ଦେହକୁ ଜଗି ବସିଥିବେ ବାପା ଓ ଭାଇ ।

ପ୍ରଭା, ମୁନ୍ନା ଆଜ କେତେ ବଡ଼ ହେବେଣି ? ସକାଳ, ସନ୍ଧ୍ୟାର ବିବର୍ଣ୍ଣ ଆକାଶ ଆଡ଼କୁ ବିବର୍ଣ୍ଣ ହୋଇଉଠୁଥିବ ତମର ନିସ୍ପଲକ ଶଙ୍ଖ ଶୁଭ୍ର ହାତ ନଖିଷଣ କରି । ତମର ମନେ ପଡ଼ିଯାଉଥିବ ଅତୀତର ସେଇସୁନ୍ଦର ଦିନଗୁଡ଼ିକ ।

ମୁଁ ମରିନି ପ୍ରଭା ମୁଁ ମରିନି ! ଏବେବି ପ୍ରଧାନ ମନ୍ତ୍ରୀଙ୍କର ନିଦ୍ରମ ନିଦ ଭଙ୍ଗ ଯାଉଥିବ ମୋର ଅଶୁଭ ଛାୟାର ସ୍ୱପ୍ନ ଦେଖି ଆଜି ବାହାର ନିକ୍ଷିପ୍ତ ପ୍ରହରକ୍ଷେ ପାନପାତ୍ର ଉପରେ ଚୂମ୍ବନ ଗାଢ଼ତର ହୋଇ ଉଠୁଥିବ ସୁନ୍ଦରୀ ବନ୍ଦୀଗର ମୂର୍ଖ୍ୟଙ୍କର ।

ତରୁଣ ବନ୍ଧୁମାନେ ! ଆକାଶରେ ସୂର୍ଯ୍ୟର ଦୀପ୍ତି ମ୍ଳାନ ହୋଇପାରେ, ଅଶାନ୍ତ ସାଗରର ବେଳାଭୂମିରେ ମଥା ପିଟୁଥିବା ତରଙ୍ଗ ସ୍ତବ୍ଧ ହୋଇପାରେ; କିନ୍ତୁ ତରୁଣ ଅପରାଜେୟ ଅଦମନୀୟ, ଓ ଅନମନୀୟ, ସୃଷ୍ଟିର ଅଙ୍ଗନରେ ସେ ଏକ ବ୍ୟତିକ୍ରମ, ଏକ ବିସ୍ମୟ ।

ତରୁଣ ! ଭାଇ ! ମୁଁ ଜାଣେ ଦେଶର ଘାତକମାନେ କାଲିଲ ତମକୁ ତିଳ ତିଳକରି ହତ୍ୟା କରିଛନ୍ତି । ଏଇ ବଞ୍ଚିତ ସମାଜର ତମେ ଥିଲ ଶକ୍ତି, ଶ୍ରେଷ୍ଠତମ ଶକ୍ତି ! ଦେଶର ଦଳିତ ଜନତାର ତମେ ଥିଲ ମୁକ୍ତିର ମଶାଲ ! ମୋ ଦେଶର ଗରିବ ଜନତାର ତମେ ଥିଲ ଆଶାର ଅଲିଭା ପ୍ରଦୀପ । ଅସଂଖ୍ୟ ପ୍ରଗତିକାମୀ ଯୁବକ ଓ ସଂଗ୍ରାମୀ ବନ୍ଧୁଙ୍କର ତମେ ଥିଲ ସଫଳ ପଥ ପ୍ରଦର୍ଶକ ! ଏ କାରଣ ସଭ୍ୟତାର ଉଦ୍‌ଭଟ ନାୟକମାନେ ତୁମକୁ ସହ୍ୟ କରିପାରିଲେନି । ସେମାନେ ତମକୁ ଶେଷ କରିଦେଲେ । କେଉଁ ପରିସ୍ଥିତିରେ ତମର ମୃତ୍ୟୁ ହେଲ ତାହା କେହି ଜାଣନ୍ତିନି । କେବଳ ଜାଣିଛି ମୁଁ ।

ମୋର ଏ ଲେଖା ଯଦି ସୂର୍ଯ୍ୟାଲୋକ ଦେଖିବ, ତେବେ ସାରା ଦେଶ ଜାଣିବ କିଭଳି ସୟତାନ ହୋଇପାରନ୍ତି ଦେଶର ଜନନାୟକମାନେ । ମିଥ୍ୟାର କଳା ପରଦାକୁ ଛିନ୍ନଭିନ୍ନ କରି ସତ୍ୟ ଦେଖାଦେବ ଜୀବନର ରଙ୍ଗିନ ରଙ୍ଗମଞ୍ଚ ଉପରେ ।

ମୋତେ କ୍ଷମା ଦେବ ତରୁଣ । ତମର ଜୀବନ କାହାଣୀ ଲେଖିବାପାଇଁ ସକ୍ଷମ ଲେଖନୀ ମୋ ହାତରେ ନାହିଁ । ମୁଁ ଲେଖକ ନୁହେଁ । ତଥାପି ମୁଁ ଲେଖିବି କାରଣ ଏ ଜୀବନୀ ସମ୍ଭବତ ଭବିଷ୍ୟତରେ ଘନିଷ୍ଠ ଅଭିଜ୍ଞ କେହି ବ୍ୟକ୍ତି ଏହା ଲେଖିବେନି ।

ମସ୍ତିଷ୍କ ଭିତରେ ମୋର ପ୍ରଚଣ୍ଡ ଆଲୋଡ଼ନ ଆରମ୍ଭ ହୋଇଗଲାଣି । ଏ ଉତ୍ତେଜନା ମୋତେ କିଛି ସମୟ ଅଶାନ୍ତ କରିଦେବ । କିଛି ସମୟ ଏଇ ଛୋଟ କୋଠରୀରେ ଘୋର ବିକଳପଣରେ ମୋତେ ପଦଚାରଣା କରିବାକୁ ପଡ଼ିବ ।

କି ଭୟଙ୍କର ସେମାନେ ! ତାଙ୍କର ସେଇ ମିଠା ମିଠା ହସ କି ବିଷାକ୍ତ ! ନିଷ୍ପାପ ଫୁଲଗୁଡ଼ିକ ପାଖୁଡ଼ା ପାଖୁଡ଼ା କରି ଉଡ଼ାଇ ଦେବାରେ ସେମାନଙ୍କର କି ଆନନ୍ଦ !

ଅମନୁଷ୍ୟତାର ଏହି ନିଷ୍ଠୁର ଶତାବ୍ଦୀ କି ବିଭତ୍ସ ! ଏ ଶତାବ୍ଦୀର ତମେ ଥିଲ ଏକ ରହସ୍ୟ !

ତମର ଶପଥ ଥିଲା ଛଦ୍ମତାର ମୁଖାଖୋଲି ଦୀପ୍ତିମନ୍ତ ସତ୍ୟର ଆବାହନ କରିବା ।

ନର୍କର ସମସ୍ତ ବିଭୀଷିକାରେ ସେମାନେ ସ୍ନାତ କରାଇଛନ୍ତି ତମକୁ । ସୟତାନମାନେ ତଳେ ତଳେ ଆହତ, କ୍ଷତାକ୍ତ କରିଚନ୍ତି ତମର ସେହି ବୀର୍ଯ୍ୟବନ୍ତ ବପୁକୁ ।

ଦଲାଲ ବୈଜ୍ଞାନିକମାନେ ଗବେଷଣା କରିଚନ୍ତି ସୁରପୁରର ବନଦ୍ରୁ-ମନ୍ଦାର ଭଳି ତମର ସଦା ଜାଗ୍ରତମନକୁ ଧୂମ୍ରାଚ୍ଛନ୍ନ କରିବାକୁ । ଯନ୍ତ୍ରଣାର ସୁଅ କାଟି କାଟି ତମକୁ ଆଗେଇବାକୁ ପଡ଼ିଚି ମୁହୂର୍ତ୍ତେ ମୁହୂର୍ତ୍ତେ ଧରି । ତଥାପି

ତମର କ୍ଷୁରଧାର ବୁଦ୍ଧିରେ କଳଙ୍କର କଳାଚିହ୍ନ ଦେଖାଦେଇନ । ଦୃପ୍ତ ମସ୍ତକ ନମିତ ହେବାର ସୂଚନା ସେମାନଙ୍କୁ ଉଲ୍ଲସିତ କରେନ । ସମାଜରେ ଜଡ଼ପଦ ବହନ କରୁଥିବା ସେଇ ଶ୍ୱାନବୁଦ୍ଧି ଯୁକ୍ତ ସମ୍ଭ୍ରାନ୍ତମାନଙ୍କୁ । ତମେ ଅବଜ୍ଞା ଓ ତାଚ୍ଛଲ୍ୟର ଦୃଷ୍ଟିରେ ଅବଗାହନ କରାଇଛ । ଭବିଷ୍ୟତର ଆଶଙ୍କା ସେମାନଙ୍କର ସୁଖ-ସାଜ୍ଜା-ଚର୍ଚ୍ଚିତ ରଜନୀ କଣ୍ଟକିତ ହୋଇପଡ଼ନ୍ତୁ ଭୟ ଓ ଅସହାୟତାର ତୁଷାର ଶୀତଳ ସ୍ରୋତ ସେମାନଙ୍କ ହୃଦୟକୁ ଆଚ୍ଛନ୍ନ କରୁଚ ।

ତାପରେ— ? ଅବଶ୍ୟମ୍ଭାବୀ ଯାହା ତାହା ଘଟିବ । ସେଇ ଧ୍ୱଂସ ପ୍ରଚାରକ, ନରହନ୍ତାଦଳ ତମକୁ ସହ୍ୟ କରି ପାରିନାହାନ୍ତି । ତମର ଅଦମନୀୟ ଆତ୍ମା ଏକ ଉଲଙ୍ଗତରବାରି ଭଳି ସେମାନଙ୍କୁ ଶାସନ କରୁଚ । ସେମାନଙ୍କର ମର୍ମେ ମର୍ମେ ବିଷାଦ ଓ ତିକ୍ତତାର ଲତା ଲଟେଇ ଦେଇଚ । ପ୍ରତ୍ୟେକ ବର୍ଗଇଞ୍ଚରେ ଅତ୍ୟାଚାରର ମୁଦ୍ରାଙ୍କ ବହନ କରୁଥିବା ତମର ପବିତ୍ର ଦେହରେ ସେମାନେ ଦୁଇ ଦୁଇଟି ରିଭଲଭରର ଚେମ୍ବର ଖାଲି କରିଦେଇଚନ୍ତି । ମୃତ୍ୟୁର ସେଇ ନିର୍ମମ ମୁହୂର୍ତ୍ତରେ ମଧ୍ୟ ତମର ଓଷ୍ଠାଧାରରେ ଯେଉଁ ଅପରାଜେୟ ସ୍ମିତ ଟିକି ଲାଗି ରହିଥିଲା, ତାହା ସେଇ ଆତତାୟୀମାନଙ୍କ ମାନସ ଦିଗବଳୟର ରକ୍ତମେଘର ଭୟଙ୍କରତ୍ୱ ସୃଷ୍ଟି କରୁଚ । ତେଣୁ ସେଇ ରକ୍ତମୁଖ ବ୍ୟାଘ୍ରମାନେ ତମର ଶ୍ରେଷ୍ଠସାଥି ଟୋକେଇ ଉପରେ ନିର୍ଯ୍ୟାତନାର ପ୍ରଲେପ ଟାଣିନେବାପାଇଁ ଦ୍ୱିଧାବୋଧ କରୁଛନ୍ତି । ସମୟ କେତେ ହେବଣି ?

ଭୂଗର୍ଭର ଏଇ ନିଃସଙ୍ଗ କୋଠରୀରେ ଦିନରାତିର ଭେଦ ବାରିବା ସମ୍ଭବ ହେଉଚି କେବଳ ଆଲୋକର ତୀବ୍ରତା ଅନୁମାନ କରି । ଓ୍ୱାର୍ଡ଼ରର ଆଗମନ ଓ ତିରୋଧାନ ହିଁ ଏଠାରେ ସମୟକୁ ଚିହ୍ନିତ ଓ ଖଣ୍ଡିତ କରୁଛି ।

ମୋ ଲେଖା କଣ ବନ୍ଧୁମାନଙ୍କ ପାଖରେ ପହଞ୍ଚିପାରିବ ? ଏ ଲେଖା ଅବାରିତ ସୂର୍ଯ୍ୟାଲୋକ ଦେଖିଲେ ମୋ ଦେଶର ରାଜନୈତିକ ଜଗତରେ ଏକ ଭୂମିକମ୍ପ ଦେଖାଦେବ ଏବଂ ଜନତାର ତୃଷ୍ଣାର୍ତ୍ତ ଚକ୍ଷୁ ନିଶ୍ଚୟ ଧପ୍ ଧପ୍ ଜଳି ଉଠିବ ।

ସଇତାନମାନଙ୍କୁ ଧନ୍ୟବାଦ ସେମାନେ କେତେ ଦିନ ହେଲା ନିର୍ଦ୍ଦିଷ୍ଟ ପୁସ୍ତକ ଅଧ୍ୟୟନ କରିବାକୁ ମୋତେ ଅନୁମତି ଦେଇଛନ୍ତି ଓ ଲଣ୍ଠନ ବି

ଯୋଗାଇଦେଇଛନ୍ତି । ବାଇବଲ, ଧର୍ମଗ୍ରନ୍ଥ, ପୁରାଣ, ସେକସ୍‌ପିଅର୍ ଓ କାଳିଦାସ ମୋର ଏ ଅଙ୍କିତ ବାସରେ ସହୃଦୟ ସାଥୀର ଭୂମିକା ନିର୍ବାହ କରିଛନ୍ତି । ନିପୁଣ ଭାବରେ । କିଛି କାଗଜ ଓ ଦୁଇଟି କଲମ ମଧ୍ୟ ମୋର ନିରବଛିନ୍ନ ଅବସରରେ ସାଥୀତ୍ୱ ବରଣ କରିଛନ୍ତି ।

ପୂର୍ବରୁ ମୋ ଲେଖାଗୁଡ଼ିକ ଓ୍ୱାର୍ଡ଼ର ନେଇଯାଉଥିଲା । ତେଣୁ ମୁଁ ପୁରାଣର ଅନୁବାଦ ଓ ବାଇବଲ ଧର୍ମଗ୍ରନ୍ଥକୁ ତୁଳନାକରି ଲେଖା ଲେଖୁଥିଲି । ଏବେ ଆଉ ଓ୍ୱାର୍ଡ଼ର ମୋ ଲେଖାଗୁଡ଼ିକ ମାଗୁନି । ସମ୍ଭବତଃ ବହୁବର୍ଷ ହେଲା ମୋ ଲେଖାଗୁଡ଼ିକର ଏକ ସ୍ୱଚ୍ଛତା ଲକ୍ଷ୍ୟକରି ସେମାନେ ନିଶ୍ଚିନ୍ତ ହୋଇଯାଇଛନ୍ତି । ହୁଏତ କୌଣସି ରାଜନୈତିକ ପରିବର୍ତ୍ତନ ଜେଲ କର୍ତ୍ତୃପକ୍ଷଙ୍କୁ ଶିଥିଳ କରିଦେଇଛି ।

ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ପକ୍ଷରେ ପରମାଣୁ ବୋମା ଭଳି ମାରାତ୍ମକ ଏ ଲେଖାକୁ ମୋତେ ଲୁଚାଇ ରଖିବାକୁ ପଡ଼ିବ । ଜୀବନର ସକଳ ନିଃଶେଷ ହୋଇଯିବା ପୂର୍ବରୁ ମୋତେ ସିଂହାସନର ଘୃଣିତ ଷଡ଼ଯନ୍ତ୍ରର ଉଦାକୁ ଛିନ୍ନଭିନ୍ନ କରିବାକୁ ପଡ଼ିବ ।

ଆଃ ! ମସ୍ତିଷ୍କ ଯଦି ମୋର ପୂର୍ବଭଳି କାର୍ଯ୍ୟକ୍ଷମ ଥାଆନ୍ତା ? ନା, ତା ସମ୍ଭବ ନୁହେଁ କାରଣ ସୂର୍ଯ୍ୟ-ପବନ-ବର୍ଜିତ ଏଇ କୋଠରୀରେ ବହୁବର୍ଷର ନିବାସ ମୋ ମସ୍ତିଷ୍କକୁ ଧୂମ୍ରାଚ୍ଛନ୍ନ କରିଦେଇଛି ।

ସେଦିନ ଆନ୍ତର୍ମହାବିଦ୍ୟାଳୟ ତର୍କ ପ୍ରତିଯୋଗିତା ପରେ ପ୍ରଫେସର୍ ଦାସ୍ ମୋତେ କୁଣ୍ଢେଇ ଧରି କହିଥିଲେ, 'ତୁମେ ପାର୍ଲାମେଣ୍ଟକୁ ଯାଅ ଶର୍ମା । ତମର କ୍ଷୁରଧାରିତ ଯୁକ୍ତି ଦେଶକାମରେ ଲାଗିବା ଉଚିତ ।'

ସୁଶାନ୍ତ ନାସାଧାରୀ ଅନୀତା ଦାସ ସେଦିନ ଭୀରୁ ନମ୍ରଭି କହିଥିଲା, 'ତମ ସହିତ ତର୍କ କରିବାରେ ଆନନ୍ଦ ରହିଛି ଶର୍ମା ।'

ଅନୀତା ଦାସ ପୂର୍ବ ବର୍ଷର ଶ୍ରେଷ୍ଠ ତାର୍କିକ ପୁରସ୍କାର ପାଇଥିଲା ।

ବନ୍ଧୁମାନେ ଛୁଟାଇ ଦେଇଥିଲେ ଅଭିନନ୍ଦନର ସୁଅ ।

କେତେଶୀଘ୍ର ବୁଲିଗଲା ସେ ସବୁଜିମାଭରା ଦିନଗୁଡ଼ିକ ।

ବହୁସ୍ମୃତି, ବିସ୍ମୃତିର ଶ୍ୱେତବାଲିରେ ପଥ ହରାଇଲାଣି ।

ମୁକ୍ତାବୁନ୍ଦାକ ଭଳି ମୋତେ ଅତୀତର ସାଗରଗର୍ଭରେ ଅବତରଣ କରିବାକୁ ପଡ଼ିବ ।

କି ଭୟାନକ ଷଡ଼ଯନ୍ତ୍ର କରିଥିଲେ ସଭ୍ୟଧାରୀମାନେ ତ୍ରମୀଳିକାଙ୍କୁ ନିଃଶେଷ କରି ଦେବାଲାଗି । ଭାରତବର୍ଷର ଅଜ୍ଞାତ ଅଞ୍ଚଳ ସମ୍ପୃଗଣ୍ଡରେ ଯେଉଁ ନୂତନ ସୂର୍ଯ୍ୟ ଜନ୍ମ ନେଇଥିଲା, ତାକୁ ସାରା ଭାରତବର୍ଷର ଦଳିତ ବର୍ଗ ଚାହିଁ ରହିଥିଲେ ଆଶା, ବିଶ୍ୱାସ ଓ ଉନ୍ମାଦନାର ସପାଳୀ ମାଳି । ସ୍ମୃତିର ଗଳ୍ପାଘରେ ବନ୍ଧୁତ କୋଠରୀ । ସେ ଭିତରେ ମୋତେ ଖୋଜିବାକୁ ପଡ଼ିବ ବହୁତ ସନ୍ତର୍ପଣରେ ।

ଅତୀତ ଧୀରେ ଧୀରେ ଧୂମିଳ ହୋଇ ଆସୁଚି । ତୁମେ ହୁଏତ ଆସିବ ଅତୀତର ଝାପ୍‌ସା ଝାପ୍‌ସା ଛୁଇଁ ବ୍ୟଥିତ ଆଜି କିନ୍ତୁ ମୋ ପାଖରେ ରହିବ ନାହିଁ । ଅତୀତ ଆଜି ଭବିଷ୍ୟତ ବୋକାକାର ହୋଇ ପଡ଼ିରହିବ କେବଳ ଏକ ବେଦନାଭରା ବର୍ତ୍ତମାନ ।

କେଉଁଠି ? କେଉଁ ଉଜ୍ଜ୍ୱଳ ମୁହୂର୍ତ୍ତରେ ତରୁଣ ସହିତ ମୋର ଦେଖା ହୋଇଥିଲା ? ମୁଁ ତ କଳ୍ପନା କରିପାରୁନି ମୋର ସେଇ ଦିନଗୁଡ଼ିକୁ ଯେତେବେଳେ ତରୁଣ ଓ ମୋର ବାଟ ଅଲଗା ଅଲଗା ଥିଲା ।

ତରୁଣକୁ ସେମାନେ ହତ୍ୟା କରିଛନ୍ତି କିନ୍ତୁ ତରୁଣ ମୋତେ ତ୍ୟାଗ କରିପାରିନି । ଏବେ ମଧ୍ୟ ନରମ ଆଲୋକରେ ବାଟକୁ ପ୍ରସନ୍ନକରି ତରୁଣ ଆସେ ମୋ ପାଖକୁ । ତାର ସେଇ ବେଦନାଭରା ହସରେ ମୋତେ ପ୍ରାଣ କରାଇ ସେ ପଚାରେ, 'ମୁଁ କ'ଣ ମରିଚି ? ମୁଁ କ'ଣ ମରିପାରେ ??'

ମୁଁ ଖୋଜୁଥିବା ସ୍ମୃତିର କୋଠରୀଟିରେ ହେବୁକ ଅନେକ ଦିନ ହୋଇଟିଲାଣି । ଜୀବନର ପାଖୁଡ଼ା ଗୁଡ଼ିକରେ ଯେତେବେଳେ ରଙ୍ଗ ଓ ମଧୁକର ସମାବେଶ, ଆକାଶ ଆଉ ଧରଣୀରେ ଯେତେବେଳେ ସ୍ୱପ୍ନଭରା ନିମନ୍ତ୍ରଣ, ତାରୁଣ୍ୟର ଏକ ସୁନ୍ଦର ମୁହୂର୍ତ୍ତକୁ ଗର୍ବଧାନର ବାର୍ତ୍ତା ଶୁଣାଇବାକୁ ଆସିଥିଲା ତ୍ରମୀଳିକା ।

ତ୍ରମୀଳିକା ବ୍ୟକ୍ତିତ୍ୱରେ କୋଣପୂର୍ବର ବନାନୀର ଗମ୍ଭୀରତା ଓ ରହସ୍ୟ । ଦେହରେ ତାର ଶାଳବଣର କଠିନତା ଓ ସୌନ୍ଦର୍ଯ୍ୟ ।

ରେଭେନ୍‌ସା କଲେଜର ଅନ୍ୟ ଅସଂଖ୍ୟ ତରୁଣ ତରୁଣୀଭଳି ସ୍ୱାମୀଉକାଙ୍କୁ ମୁଁ ମୌନ ସ୍ୱାଗତ ଜ୍ଞାପନ କରିଥିଲି କୌତୁକୋଜ୍ଜ୍ୱଳ ମୁଖରେ ଭୃକୁଞ୍ଚନର ମଣିଷଭଳି ସେ ଥିଲା ଆମ ପକ୍ଷରେ ଦୁର୍ବୋଧ୍ୟ ଓ ଦସ୍ପାର ପାଠ ।

ଗଜପତି ମହାବିଦ୍ୟାଳୟରୁ ଇଣ୍ଟରମିଡିଏଟ୍ ସାର୍ଟିଫିକେଟ ନେଇ ତରୁଣ ସ୍ୱାମୀଉକା ଯୋଗ ଦେଇଥିଲା ରେଭେନ୍‌ସା ସ୍ନାତକ ଶ୍ରେଣୀରେ ! ଓଡ଼ିଶାର କୃତୀ ଛାତ୍ରମାନଙ୍କ କଳରବରେ ସେତେବେଳେ ରେଭେନ୍‌ସା ପ୍ରାଙ୍ଗଣ ଶବ୍ଦାୟିତ । ସ୍ୱାମୀଉକାଭଳି ବିଶିଷ୍ଟ ଶ୍ରେଣୀର ଛାତ୍ର ସେଠାରେ ଅନେକହେବେ !

ସନ୍ଧ୍ୟା ସେବନ ବିଦାୟ ନେଇସାରିଥିଲା ଅନେକ ଆଗରୁ । କଲେଜ ଛକରେ ବିଦ୍ୟୁତବତୀ ସବୁ ଉପଭୋଗ କରୁଥିଲେ ଯୌବନଚ୍ଛଳ ପ୍ରାଣର ଉଦ୍ଦାମ ଉଚ୍ଛ୍ୱାସ । କଲେଜ ଛକର ଅନତି ଦୂରରେ ଏକ କ୍ଷୁଦ୍ର ହୋଟେଲରେ ପିଆଜ ଓ ବାଇଗଣୀର ରୂପ ଓ ଗନ୍ଧକୁ ସମ୍ବର୍ଦ୍ଧନା ଜଣାଉଥିଲି ମୁଁ । ହୋଟେଲଟିରେ ଦାରିଦ୍ର୍ୟର ମୁଦ୍ରାଙ୍କ ସୁସ୍ପଷ୍ଟ ଥିଲେବି ରୁଚିର ଅଭାବ ନଥିଲା । ମାଲିକର ଭଦ୍ର ଓ ବିନୀତ ବ୍ୟବହାର, ଖାଦ୍ୟ ଜିନିଷଗୁଡ଼ିକର ତୃପ୍ତିଦାୟକ ସ୍ୱାଦ ମୋତେ ବହୁ ସନ୍ଧ୍ୟାରେ ଏ ହୋଟେଲର ଅତିଥି କରାଉଥିଲା ।

କୋରାପୁଟରୁ ଆଗତ ତରୁଣ ସ୍ୱାମୀଉକାକୁ ମୁଁ ବହୁ ସମୟରେ ଭେଟିଥିଲି ଏଇ ହୋଟେଲଟିରେ । ସମ୍ଭବତଃ ମୋଭଳି ତାର ମଧ୍ୟ ଏଇ ହୋଟେଲଟି ପ୍ରତି ଆକର୍ଷଣ ଥିଲା । କେତେ କେତେ ଏଇ ନିଃସଙ୍ଗ କୃଷ୍ଣକାୟ ଯୁବକଟିର ସାକ୍ଷାତ ପାଇଲାବେଳେ ମୋ ମନରେ କୌତୁହଳର ଜୁଆର ସୃଷ୍ଟି ହେଉଥିଲା । ତଥାପି ସଂକୋଚର ବାଲିବନ୍ଧ କେବେ ଅତିକ୍ରମ ହୋଇନଥିଲା ଓ ତନ୍ଦ୍ରିଳର ନିବିଡ଼ ଅରଣ୍ୟଭଳି ଏ ତରୁଣର ଅଜଣା ରହସ୍ୟମୟ ବ୍ୟକ୍ତିତ୍ୱ ମୋ ପକ୍ଷରେ ନିଚ୍ଛିଦ୍ରାଞ୍ଚଳ ହୋଇ ପଡ଼ିଥିଲା ।

ଖାଦ୍ୟ ଶେଷ ହୋଇଥିଲେ ବି ମୁଁ ଆରାମରେ ବସି ଅନ୍ୟ ଟେବୁଲରେ ଆଳାପରତ ତରୁଣମାନଙ୍କୁ ନିରୀକ୍ଷଣ କରୁଥିଲି । ମୋ ପାଖ ଟେବୁଲରେ ସ୍ୱାମୀଉକା ଉଦ୍‌ଭିନ୍ନ ଖାଦ୍ୟ ଗଳାଧଃକରଣ କରୁଥିଲା ।

ହଠାତ୍ ଦୂରରେ ଥିବା ଟେବୁଲରେ ଆଳାପରତ କେତେଜଣ ଯୁବକଙ୍କୁ ଦେଖି ମୁଁ ଚମକି ପଡ଼ିଲି । କଲେଜର କୁଖ୍ୟାତ ଗୁଣ୍ଡା ତପନ ତ୍ରିପାଠୀ ତା

ତଳ ସହ ସେଠାରେ ଉପସ୍ଥିତ ଥିଲା । ମୋର ଆଶଙ୍କା ହେଲା ହୋଟେଲରେ ନିଶ୍ଚୟ କୌଣସି ଗଣ୍ଡଗୋଳ ହବ ।

ତପନ ଆରାମରେ ସିଗ୍ରେଟ ଟାଣୁଥିଲା ଏବଂ ବେପରୱା ଭାବରେ ଧୂମ୍ର କୁଣ୍ଡଳୀ ସୃଷ୍ଟି କରୁଥିଲା । ସେ ହାତରେ ଏକ ବଳା ପିନ୍ଧିଥିଲା ଓ ଶିଖ୍ ଢାଞ୍ଚରେ ଦାଢ଼ି ଓ ବାଳ ରଖିଥିଲା ।

ତପନ ସାଧାରଣତଃ ବିଖ୍ୟାତ ହୋଟେଲମାନଙ୍କରେ ଅଡ଼୍ଡା ଜମାଉଥିଲା । ତେଣୁ କ୍ଷୁଦ୍ର ହୋଟେଲଟିରେ ତାର ଅପ୍ରତ୍ୟାଶିତ ଆବିର୍ଭାବ ମୋତେ ବିସ୍ମିତ କରିଦେଇଥିଲା ।

କିଛି ସମୟପରେ ତପନ ତାର ସାଙ୍ଗମାନଙ୍କୁ ଧରି ହୋଟେଲରୁ ବିଦାୟ ନେବାକୁ ପ୍ରସ୍ତୁତ ହେଲା । ହୋଟେଲ ମାଲିକ ଅତ୍ୟନ୍ତ ନମ୍ରଭାବରେ ତପନକୁ ତାର ଦେୟ ଦେଇଦେବାପାଇଁ ଅନୁରୋଧ କଲେ । ତପନ ଏକ ହିଂସ୍ର ଚାହାଣୀ ନିକ୍ଷେପ ମାଲିକ ଉପରେ କେନ୍ଦ୍ରିତକରି କହିଲା, 'ବାଜେ ଜିନିଷ ଖୁଆଇ ପଇସା ମାରିନେବାର ଫିକର ମୋ ପାଖରେ ଚଳିବ ନାହିଁ ।'

ମାଲିକ ଅତ୍ୟନ୍ତ ବିସ୍ମୟ ପ୍ରକାଶକରି କହିଲେ, 'ବାଜେ ଜିନିଷ ! ମୁଁ ତ ବାଜେ ଜିନିଷ ବିକ୍ରି କରେନା । ଆପଣ ଏ ଗରାଖମାନଙ୍କୁ ପଚାରନ୍ତୁ ।'

ତପନର ତୀବ୍ର ନେତ୍ରର ଉଦ୍ଧତ ଚାହାଣୀ ବୁଲିଗଲା ଭିନ୍ନ ଟେବୁଲରେ ଭୋଜନରତ ବ୍ୟକ୍ତିଙ୍କ ଉପରେ । ହଳାଳ ପାଣିକୁ ଗୋଡ଼ ନ ବଢ଼ାଉଥିବା ଏବଂ ମାଛକୁ ମ' ନ କହୁଥିବା ଶୃଗାଳଧର୍ମୀ ବ୍ୟକ୍ତିଏ ଯେଉଁ ଦେଶରେ ଭଲ ଲୋକର ସୁନା ପାଗରେ ବିଭୂଷିତ ହୁଏ । ସେଠାରେ ତପନ ତ୍ରିପାଠୀର ଚ୍ୟାଲେଞ୍ଜକୁ ନୀରବରେ ହଜମକରିବା ଅତି ସ୍ୱାଭାବିକ ଥିଲା ହୋଟେଲର ସମସ୍ତ ବ୍ୟକ୍ତିଙ୍କ ପକ୍ଷରେ ।

'ମୁଁ ଯାହା କହୁଛି ସବୁ ଗ୍ରାହକ ତାହାହିଁ କହିବେ', ତପନ ବେଖାତିର ହସ ହସି କହିଲା ।

'ତମ ହୋଟେଲର ଜିନିଷ ପତ୍ର ନଷ୍ଟ ନକରି ଆମେ ଯେ ବୁଲିଯାଉଛୁ । ସେଥିପାଇଁ ଆମେ ଧନ୍ୟବାଦ ପାଇବାର କଥା ।'

ହୋଟେଲ ମାଲିକ ବିଚଳିତ ଥିଲେ । ଗ୍ରାହକମାନଙ୍କ ଖିନ୍ନତା-ପ୍ରସୂତ ନୀରବତା ତାଙ୍କୁ ବ୍ୟଥିତ କରିଥିଲା । ଅତି ଅସହାୟ ଭାବରେ ସେ କହିଲେ, 'ଆପଣମାନଙ୍କ ମଧ୍ୟରେ ଜଣେ ମୁଖା ସତ୍ୟକଥା କହିବେକି ।' ତାଙ୍କ ଆଖିରେ ଅଶ୍ରୁ ଟଳମଳ କରୁଥିଲା ।

'ଆପଣ ଠିକ୍ କହୁଛନ୍ତି । ଆପଣଙ୍କ ହୋଟେଲରେ କୌଣସି କାହାଣି ବାଜେ ନୁହେଁ ।'

ବୋମା ପଡ଼ିଲେ ବି ଲୋକେ ଏତେଟା ଚମକି ପଡ଼ିନଥାନ୍ତେ । ତପନର ଚକ୍ଷୁରେ ନାଲି ରଙ୍ଗ ତାର ଆସ୍ଥାନ ଜମାଇ ସାରିଥିଲା । 'କିଏ ସେ କହୁଛି ଏକଥା ?' ତପନ ତୀବ୍ର ସ୍ୱରରେ ପ୍ରଶ୍ନ କଲା । ଏକ ସେକେଣ୍ଡ ଅପେକ୍ଷାକରି ପୁନର୍ବାର ସ୍ୱରର କଠୋରତା ବଢ଼ାଇ ସେ ପ୍ରଶ୍ନ କଲା, 'କିଏ ସେ କହିଲା ଏ କଥା ?'

ଅନ୍ୟ ଗୋଟିଏ ଟେବୁଲରେ ଭୋଜନରତ ଶ୍ୟାମଳ ଯୁବକଟିଏ ସାଧାରଣ ସ୍ୱରରେ ଉତ୍ତର ଦେଲା, 'ମୁଁ କହିଲି ।'

'ଏ କଥା ସତ୍ୟ ?' ତପନର ଜଣେ ସାଥି ପ୍ରଶ୍ନ କଲା ।

'ପ୍ରତ୍ୟୁଷର ସୂର୍ଯ୍ୟୋଦୟ ଏବଂ ପ୍ରଦୋଷର ସୂର୍ଯ୍ୟାସ୍ତ ଭଳି ସତ୍ୟ ।'

'ତମେ କ'ଣ କର ?' ତପନ ଦଳର ଆଉ ଜଣେ ଯୁବକର ପ୍ରଶ୍ନ ।

'ପାଠ ପଢ଼େ'

'କୋଉଠି ?' ପୁଣି ପ୍ରଶ୍ନ

'ରେଭେନ୍ସାରେ'

'କୋଉ ଇଏର'

'ଦ୍ୱିତୀୟ ବର୍ଷ'

'ନୂଆ ଆସିଚ ବୋଧହୁଏ । ଘର କେଉଁଠି ?'

'ଜୟପୁରଗଡ଼ାରେ'

'କୋରାପୁଟ ଜିଲ୍ଲା'

'ହଁ'

'ତମେ ମତେ ଚିହ୍ନିଚ ?' ତପନ ପଚାରିଲା ।

'ନା, ଚିହ୍ନିବାର ସୁଯୋଗ ପାଇନି', ସଙ୍କୁଚିତ ଗଳାରେ ଯୁବକଟି ଉତ୍ତର ଦେଇଥିଲା ।

'ପାଖକୁ ଆସ ।'

'ମୋର ଆହାର ତବ ସନ୍ନିପଟେ ଆସିବ'

ଜଣେ ଦୁଇଜଣ ଛାତ୍ର ଆଗେଇଯାଇ ତା କାନରେ କିଛି କହିଲେ, କିନ୍ତୁ ସେମାନଙ୍କର କଥାର ପ୍ରଭାବ କିଛି ସେ ଯୁବକ ଉପରେ ପଡ଼ିବା ଜଣାପଡ଼ିଲାନି ।

ତପନ ଗୋଷ୍ଠୀର ଜଣେ ଛାତ୍ର ପଚାରିଲା— 'ତମର ନାମ ?'

'ତରୁଣ ସ୍ୱାମୀନାଥ ।'

'ସ୍ୱାମୀନାଥ !' ହସରେ ଫାଟିପଡ଼ିଥିଲେ ତପନର ଦଳ ।

'ସ୍ୱାମୀନାଥ ! ସ୍ୱାମୀନାଥ !'

'ହଁ ସ୍ୱାମୀନାଥ ! କୋରାପୁଟ ବନ ଭୂମିରେ ବାଘ, ଭାଲୁଙ୍କ ସଙ୍ଗେ ଲଢ଼େଇରେ ଅଭ୍ୟସ୍ତ ବଂଶର ସନ୍ତାନ ସ୍ୱାମୀନାଥ ।'

'ବାଘ !'

'ଭାଲୁ !'

'ବାରୁଦ !'

'ହରଟ ଖରଟ ନଖ !'

'ଗାହାଡ଼ଭଳି ଦାନ୍ତ !'

'କାହାର ?'

'ସ୍ୱାମୀନାଥର !'

ତାଚ୍ଛଲ୍ୟର ହସରେ ସାରା ହୋଷ୍ଟେଲର ବାୟୁମଣ୍ଡଳକୁ ଶବ୍ଦାୟିତ କରିଥିଲେ ତପନର ଦଳ ।

ହଠାତ୍ ହ୍ୱମୀରକା ଗମ୍ଭୀର କଣ୍ଠରେ କହିଲା— 'ବନ୍ଦ କର ।'

ସମସ୍ତେ ନୀରବ ହୋଇଗଲେ ।

'ହ୍ୱମୀରକା ! ତମେ କ୍ଷମା ପ୍ରାର୍ଥନା କର ।' ସମସ୍ତଙ୍କୁ ନୀରବ କରାଇଥିବା ଯୁବକଟି କହି ଉଠିଲା ।

'କାହିଁକି ?' ହ୍ୱମୀରକାର ପ୍ରଶ୍ନ ।

'ତମେ ଆମକୁ ଅପମାନ କରିଚ ।'

'ଏଠାରେ ଅପମାନର ପ୍ରଶ୍ନ ଉଠିଲା କେଉଁଠୁ ?'

'ଆମେ ଯେଉଁ ଖାଦ୍ୟକୁ ବାଜେ କହୁଚୁ, ତମେ ତାକୁ ଭଲ ବୋଲି ସାର୍ଟିଫିକେଟ ଦଉଚ ।'

'ମୁଁ ମୋ ଜିଭ ଓ ନାକକୁ ଅବିଶ୍ୱାସ କରିପାରିବିନି ।'

'ତମେ ମିଛ କହୁଛ ?'

ତରୁଣର ଚେହେରାର ଗାମ୍ଭୀର୍ଯ୍ୟ ବୃଦ୍ଧି ପାଇଥିଲା ।

'ମିଛ କହିବା ମୁଁ ଜାଣେନି ।'

'ବାହାରେ ସତ୍ୟବାଦୀ ଯୁଧିଷ୍ଠିର !' କିଏ ଜଣେ ଥଟ୍ଟା କରିଥିଲା ।

ହୋଟେଲ ମାଲିକକୁ ଲକ୍ଷ୍ୟକରି ତପନ କହିଲା, 'ତମେ ତମ ଜିନିଷ ବାଜେ ବୋଲି ସ୍ୱୀକାର କର ।'

ହୋଟେଲ ମାଲିକ ନୀରବ ଥିଲା ।

'ମୁଁ ତମକୁ ପାଞ୍ଚ ମିନଟ୍ ସମୟ ଦେଲି । ପାଞ୍ଚ ମିନଟ୍ ପରେ ମୋର ଯାହାଇଚ୍ଛା ମୁଁ କରିବି ।'

'ବାବୁ !' ହୋଟେଲ ବାଲାର କଣ୍ଠରେ ମିନତି ଥିଲା ।

'ହ୍ୱମୀରକା । ହାତ ମିଶାଅ ।'

ହ୍ୱମୀରକା ଆଗେଇ ଆସି ତପନ ସାଥିରେ ହାତ ମିଶାଇଲା । ତପନର କୌଶଳ ସହ ପରିଚିତ ଥିବାରୁ ଆମେ ଖୁବ୍ ଶୀଘ୍ର ହ୍ୱମୀରକା କଣ୍ଠରୁ ଯନ୍ତ୍ରଣା ସୂଚକ ଶବ୍ଦ ଶୁଣିବୁ ବୋଲି ଆଶା କରିଥିଲୁ ।

ତପନ ତାର ବିଭିନ୍ନ କୌଶଳ ପ୍ରୟୋଗକରି ହ୍ରମୀଳିକାକୁ କାବୁ କରିବାକୁ ଚେଷ୍ଟା କରିଥିଲା । କିନ୍ତୁ ପ୍ରଥମଥରପାଇଁ ଶୋଚମୀୟ ବ୍ୟର୍ଥତା ତାକୁ ପୁରସ୍କାର ମିଳିଥିଲା ।

'ଆସ ! ହୋଟେଲ ଗ୍ରୁପ ଖୋଲିଯିବା । ଆମେ ସିଂହ ସହିତ ଲଢେଇ କରୁ, ମାଛି ସହିତ ନୁହେ ।' ତପନ କହିଲା ।

ତପନ ହିପାଠୀ ତାର ଦଳବଳସହ ହୋଟେଲ ତ୍ୟାଗ କରିଥିଲା । ତପନର ସାଥିବର୍ଗ କମ୍ବା ହୋଟେଲର କେହି ଗ୍ରାହକ ସେଦିନ ଅନୁମାନ କରିପାରିନଥିଲେ ଯେ ତପନ ବୁଦ୍ଧିମାନର କାମ କରିଛି ।

ବିଶ୍ବବିଦ୍ୟାଳୟରେ ବିଶିଷ୍ଟ ସ୍ଥାନ ଅଧିକାର କରିଥିବା ଅହମିକାକୁ ବିଦାୟଦେଇ ମୁଁ ସେଦିନ ଚରୁଣକୁ ବନ୍ଧୁତାର ସ୍ୱର୍ଣ ଦେଇଥିଲି ଏବଂ ନିର୍ବୋଧ ଭଳି ଭାବିଥିଲି ଯେ ମୁଁ ଏଭଳି ଏକ ପଦକ୍ଷେପ ନେଇ ଚରୁଣକୁ ଅନୁଗୃହିତ କରୁଛି ।

ଗର୍ବ କରିବାଭଳି ଅନେକ ଜିନିଷ ମୋର ଥିଲା । ବିପ୍ରସ ମହାପାତ୍ର ଙ୍କପରିବାରର ଅଭିଜାତ୍ୟ, ବିଶ୍ୱବିଦ୍ୟାଳୟରେ ପ୍ରଥମସ୍ଥାନ, ହେମଗୌର ପତଳା ଦେହର ସୌନ୍ଦର୍ଯ୍ୟ : ଏ ସମସ୍ତର ଅଧିକାଂଶ ପକ୍ଷରେ କଳୁଷିତ ଅହଙ୍କାର ପୋଷଣ କରିବା ଅସ୍ୱାଭାବିକ ନଥିଲା । ତେଣୁ ଏକ ଭଦ୍ର ଶିକ୍ଷିତ ପୁରୁଷର ସାନ୍ନିଧ୍ୟ ଲାଭ କରିବାର ସୌଭାଗ୍ୟକୁ ମୁଁ ସେତେବେଳେ ହୃଦୟଙ୍ଗମ କରିପାରିନଥିଲି ।

ହ୍ରମୀଳିକା ପ୍ରତି ମୁଁ ଆକୃଷ୍ଟଥିଲି କାରଣ ତାର ଥିଲା ଏକ ପ୍ରଚଣ୍ଡ ସ୍ୱାତନ୍ତ୍ର୍ୟଧର୍ମୀ ବ୍ୟକ୍ତିତ୍ୱ । ମୁଁ ବହୁ ସାହସୀ ଲୋକ ଦେଖିଛି କିନ୍ତୁ ଏଇତ ସବଳକ୍ଷଣପୂର୍ଣ୍ଣ ସାହସ ମୁଁ ଅନ୍ୟ କୌଣସି ବ୍ୟକ୍ତିଠାରେ ଦେଖିନି । ହ୍ରମୀଳିକାର ସାହସରେ ଔଦ୍ଧତ୍ୟ ନଥିଲା କମ୍ବା ଭାବନା ପ୍ରସୂତ ନମ୍ରତା ନଥିଲା । ପର୍ବତ ଦେହରୁ ଉତ୍ସାରିତ ଝରଣାଭଳି ସାହସ ତାର ଦୃଢ଼ ବ୍ୟକ୍ତିତ୍ୱର ଏକ ଅଙ୍ଗଥିଲା ।

ଅବଲୀଳାକ୍ରମେ ଯେ କୌଣସି ପରିସ୍ଥିତିରେ ମଧ୍ୟ ହ୍ରମୀଳିକା ତାର ମତ ଦୃଢ଼ଭାବେ ଉପସ୍ଥାପିତ କରୁଥିଲା । ଏବଂ ତାର ଗ୍ରୁପ ବନ୍ଧୁମାନେ

ଧୀରେ ଧୀରେ ହୃଦସ୍ପନ୍ଦନ ଭଳି ଶୁଣାଯାଉଥିଲେ ସେ ଇସ୍ପାତ କଠିନ ଏକ ମନ ସେଇ ସୁଗଠିତ ଶ୍ୟାମଳ ଦେହ ମଧ୍ୟରେ ଆତ୍ମଗୋପନ କରିଛି ।

ମୋର ବ୍ୟକ୍ତିତ୍ୱରେ କଳ୍ପନାପ୍ରବଣତା ଓ ସ୍ୱାଚ୍ଛନ୍ଦ୍ୟର ମାତ୍ରା ପ୍ରଚୁର ଥିଲା । ଅନ୍ୟାନ୍ୟ ଅସଂଖ୍ୟ କୁଳାଙ୍ଗାରଙ୍କ ଭଳି ମୁଁ ମଧ୍ୟ ଆଇ.ଏ.ଏସ୍‌ର ସ୍ୱପ୍ନ ଦେଖୁଥିଲି । ତେଣୁ ମୋର ସମସ୍ତ ବର୍ତ୍ତେଷ ଘଣ୍ଟା ଅଧ୍ୟୟନରେ ହିଁ ଅତିବାହିତ ହେଉଥିଲା ।

ପ୍ରତିଦିନ ଉତ୍ତାପ ଭାବରେ ମୋର ଯନ୍ତ୍ରଣା ଆରମ୍ଭ ହୋଇଗଲାଣି । ଏ ଯନ୍ତ୍ରଣା ଯୁଧିଷ୍ଠିରଙ୍କ କୁକୁରଭଳି ମୋର ଯାତ୍ରାପଥର ସଙ୍ଗୀହେବା ମୋତେ ସ୍ପଷ୍ଟ ଜଣାପଡୁଛି । ଏଥର ମୋତେ ଲେଖା ବନ୍ଦ କରିଦେବାକୁ ପଡ଼ିବ ।

ମନ ମଧ୍ୟରେ ନିରାଶାର ଉତ୍ତାଳ ଊର୍ମି ମୋତେ ବିବ୍ରତ କରୁଛି । କାହିଁକି ମୁଁ ଏତେ ଶ୍ରମ କରୁଛି ? ମୋ ଲେଖା ପାଠ କରିବ କିଏ ? ମୃତ୍ୟୁପରେ କୋଠରି ସାରା ଅନୁସନ୍ଧାନକରି ଯେତେବେଳେ ମୋର ଲେଖା ଆତତାୟୀ-ମାନେ ହସ୍ତଗତ କରିବେ, ଏକ ଦାନବୀୟ ଅଟ୍ଟହାସ୍ୟସହ ସେମାନେ ନିଷ୍ଠୁର ସମସ୍ତ କାଗଜକୁ ଅଗ୍ନି ଗର୍ଭରେ ନିକ୍ଷେପ କରିଦେବେ ।

ମୁଁ, ସାକେତ ଶର୍ମା, ତାର ମାନିପାରେନା ।

ତରୁଣ ବ୍ରହ୍ମଚାରୀଙ୍କ ଭଳି ଅଗ୍ନିଗୋଳକ ଯାହାକୁ ଉତ୍ତପ୍ତ କରିଥିଲା ଅନେକ ଥର ଧରି, ସେଇ ସାକେତ ଶର୍ମା ନିରସ ହୋଇପାରେନା । ଅକ୍ଷୟ ବିଶ୍ୱାସ ଓ ଅନମନୀୟ ଦୃଢ଼ତା ନେଇ ମୋତେ ଲେଖା ଶେଷ କରିବାକୁ ପଡ଼ିବ ।

୨

ସ୍ମୃତି ଛାତ୍ରାବାସର ସେଇ ହାସ୍ୟୋଜ୍ଜ୍ୱଳ ଦିନଗୁଡ଼ିକ ।

ସେତେବେଳେ ଜୀବନ ଥିଲା ଏକ ରୂପ ରସ ଗନ୍ଧ ଭରା ପ୍ରମୋଦ ଉଦ୍ୟାନ ।

Bliss was it in that dawn to be alive.

(ସେହି ପ୍ରତ୍ୟୁଷରେ ବଂଚିବା ଥିଲା ଆନନ୍ଦମୟ)

ତାରୁଣ୍ୟର ମଧୁର ପାନକରି ଆମେ ଥିଲୁ ମତ୍ତକ । ସ୍ୱମୀରଙ୍କା ଅତି ବନ୍ଧୁତା ସ୍ଥାପନକରି ମୁଁ ଭାବୁଥିଲି ମୁଁ ତାକୁ ଅନୁଗୃହୀତ କରିଛି । ମୋର ବନ୍ଧୁମାନେ ତ ଆମର ଏ ବନ୍ଧୁତାକୁ ଶୁଭଦୃଷ୍ଟିରେ ଦେଖୁ ନଥିଲେ । ସେମାନଙ୍କ ମତରେ ମୋ ଭଳି ଜଣେ ଅସାଧାରଣ ପ୍ରତିଭା ସମ୍ପନ୍ନ ଛାତ୍ର ସ୍ୱମୀରଙ୍କାକୁ ଅନ୍ତରଙ୍ଗ ବନ୍ଧୁରୂପେ ଗ୍ରହଣ କରିବା ରୁଚି ଓ ବିଜ୍ଞତା ବିରୋଧୀ ପଦକ୍ଷେପ ଥିଲା ।

ଅନ୍ୟ ଦିନ ସନ୍ଧ୍ୟାଠାରୁ ସେ ସନ୍ଧ୍ୟା ଥିଲା ସ୍ୱତନ୍ତ୍ର । ଆମ ଛାତ୍ରାବାସରେ ଫୁଟବଲ୍ ଟିମ୍‌ର ଏଗାରଜଣ ଖେଳାଳୀ ସେଦିନ ବଛାଯାଇଥିଲେ । ଛାତ୍ରମାନଙ୍କ ମଧ୍ୟରେ ଯଥେଷ୍ଟ ଉତ୍ତେଜନା ଥିଲା କାରଣ ଏକ ସପ୍ତାହପରେ ପୂର୍ବ ଓ ପଶ୍ଚିମ ଛାତ୍ରାବାସ ମଧ୍ୟରେ ଫୁଟବଲ ମ୍ୟାଚ୍ ହେବା ନିଷ୍ପତ୍ତି ଘୋଷିତ ହୋଇସାରିଥିଲା ।

ମୋର ବନ୍ଧୁମାନେ ସେଦିନ ଚିନ୍ତିତ ଥିଲେ । କାରଣ ଆମ ହଷ୍ଟେଲର ଶ୍ରେଷ୍ଠ ଖେଳାଳୀ ଅଜିତ୍ ହଷ୍ଟେଲରେ ନଥିଲା । ଦୀର୍ଘ ଦିନ ଟାଇଫଏଡ୍ ଭୋଗି ଭୋଗି ଅଜିତ୍ ଘରକୁ ଚାଲିଯାଇଥିଲା ।

କମନ୍ ରୁମ୍‌ରେ ସମସ୍ତ ଫୁଟବଲ ପ୍ରେମୀ ଏକତ୍ର ହୋଇଥିଲେ । ଅଜିତ୍‌ର ଅନୁପସ୍ଥିତି ସମସ୍ତଙ୍କ ମୁଖରେ ବିଷାଦର ଛାୟା ସୃଷ୍ଟି କରିଥିଲା ।

'ସବୁ ସିନା ହେଲା, ଆମର ଫୁଲ୍‌ବ୍ୟାକ୍ ହେବ କିଏ ?' ସାମଲ କହିଲା । ଫୁଲ୍‌ବ୍ୟାକ୍ ଭାବରେ ଅଜିତ୍ ଅତୁଳନୀୟ ଥିଲା । ଅନ୍ୟଜଣେ ଖେଳାଳୀ ତା ସ୍ଥାନ ପୂରଣ କରିପାରିବ, ଏ ବିଶ୍ୱାସ କାହାର ନଥିଲା ।

'ଖେଳ ତ ନିଶ୍ଚୟ ହେବ । ତେଣୁ ଯେ କୌଣସି ଜଣେ ସାଧାରଣ ଖେଳାଳୀକୁ ଫୁଲ୍‌ବ୍ୟାକ୍ ଭାବରେ ଗ୍ରହଣ କରାଯାଉ ।'

'କିଏ ସେ ଦାୟିତ୍ୱ ତୁଲାଇବ ?'

ସମସ୍ତେ ନୀରବ ଥିଲେ । ପ୍ରତିରକ୍ଷା ବିଭାଗ ପୂର୍ଣ୍ଣରୂପେ ନିର୍ଭର କରେ ଫୁଲ୍‌ବ୍ୟାକ୍‌ର ସାମର୍ଥ୍ୟ ଉପରେ ।

କିଏ ଜଣେ ପ୍ରସ୍ତାବ ଦେଲା ।

'ସ୍ୱମୀଙ୍କୋକୁ ସୁଯୋଗ ଦିଆଯାଉ । ସ୍ୱମୀରଙ୍କା ଗଜପତି କଲେଜରେ ଫୁଲ୍‌ବ୍ୟାକ୍ ଥିଲା ।'

ଅଗଡ୍ୟା ପ୍ରସ୍ତାବଟି ଛାତ୍ରମାନେ ଗ୍ରହଣ କରିନେଇଥିଲେ ।

ମ୍ୟାଚ୍‌ର ଦିନ ଆସିଗଲା ଆନନ୍ଦ ଓ ଉଦ୍ଦୀପନାର ବାର୍ତ୍ତା ନେଇ । ସମସ୍ତ କଲେଜର ଛାତ୍ରମାନେ ସେଦିନ ଖେଳ ପଡ଼ିଆରେ ଉପସ୍ଥିତ ଥିଲେ । ପର୍ଶ୍ଚିମ ଛାତ୍ରାବାସର ଖେଳାଳୀ ଦଳରେ ବିଶ୍ୱବିଦ୍ୟାଳୟ ଟିମ୍‌ର ଚାରିଜଣ ଖେଳାଳୀ ଥିଲେ । ତେଣୁ ସମସ୍ତଙ୍କର ବିଶ୍ୱାସଥିଲା ଯେ ପୂର୍ବ ଛାତ୍ରାବାସର ଦଳ ନିଶ୍ଚୟ ପରାଜିତ ହେବ ।

ସେଦିନ ଖେଳରେ ସମସ୍ତ ସମ୍ଭାବନାକୁ ମିଥ୍ୟା ପ୍ରମାଣିତ କରିଦେଇ ପୂର୍ବ ଛାତ୍ରାବାସ ଜିତିଥିଲା ।

ଏ ବିଜୟରେ ମୁଖ୍ୟଅଂଶ ଗ୍ରହଣ କରି ହ୍ୱମୀରଜା ରେଭେନ୍‌ସା କଲେଜର ଅନେକ ଫୁଲ୍‌ବ୍ୟାକ୍ ଉପାଧି ହାସଲ କରିଥିଲା ।

ଖ୍ୟାତିର ରାଜପଥରେ ହ୍ୱମୀରଜାର ରଥ ଗଡ଼ି ଚାଲିଲା ଦିନପରେ ଦିନ । ବିଶିଷ୍ଟ ସ୍ପୋର୍ଟସ୍ ମ୍ୟାନ ଓ ଖେଳାଳୀ ହିସାବରେ ସେ ଅଳ୍ପଦିନରେ କଲେଜରେ ସୁପରିଚିତ ହୋଇଗଲା । କିନ୍ତୁ ବାତାବରଣ ତାକୁ ହଜମ କରିବା ଅବସ୍ଥାରେ ନଥିଲା । ତେଣୁ ଅନ୍ୟ ଏକ ପରିସ୍ଥିତିରେ ହ୍ୱମୀରଜା କୁଖ୍ୟାତିର ଶୀର୍ଷ ସ୍ଥାନ ଅଧିକାରକରି ସମସ୍ତଙ୍କୁ ବିସ୍ମିତ କରିଦେଲା ।

ଘଣ୍ଟାର ଡାହାଣ ହାତକୁ ପୁଣି ଯନ୍ତ୍ରଣା ତାର ଟିକଟିକ ଦାନ୍ତରେ କାଟିବା ଆରମ୍ଭ କଲଣି । ଏଥର ମୋତେ ଲେଖମା କଣ୍ଠ ସମସ୍ତ ଥୋଇଦେଇ କୋଠରୀରେ ପଦଚାରଣା କରିବାକୁ ପଡ଼ିବ ।

ଯନ୍ତ୍ରଣା କମି ଆସିଲଣି । ପଦଚାରଣାବେଳେ ବହୁତ କଥା ମନର ପର୍ଦ୍ଦାରେ ଫୁଟି ଉଠୁଥିଲା । ବାପା ମତେନେଇ ଆଶାର ବିରାଟ ମହଲ ତୋଳିଥିଲେ । ସେ ଭାବିଥିଲେ ମୁଁ ଫେରାଇ ଆଣିବି ଆମ ବଂଶର ପୂର୍ବ ଗୌରବ ।

ଆମର ପୂର୍ବ ପୁରୁଷ ଏକ ପ୍ରସିଦ୍ଧ ରାଜବଂଶର ଗୁରୁ ଥିଲେ । ଅନମନୀୟତା ଓ ସାତ୍ତ୍ୱିକତା ସେମାନଙ୍କ ଚରିତ୍ରକୁ ଆକ୍ରାନ୍ତ କରିଥିଲା । ଫଳରେ ଯାହା ଅବଶ୍ୟମ୍ଭାବୀ ତାହା ଘଟିଥିଲା । ଅସ୍ଥିର ରାଜମନକୁ ସନ୍ତୁଷ୍ଟ ନକରିପାରି ସେମାନେ ନିର୍ବାସିତ ହୋଇଥିଲେ । ହାଉଦର ସେହି ଗୋଧୂଳିରେ ମଧ୍ୟ ସେମାନଙ୍କର ଉନ୍ନତ ମସ୍ତିକ ନଇଁନଥିଲା ।

ଗଞ୍ଜାମର ଏକ ଅନାମଧେୟ ଗ୍ରାମକୁ ସେମାନେ ବାଛିନେଲେ ସେମାନଙ୍କର ଆଶ୍ରୟସ୍ଥଳରୂପେ ।

ବାପାଙ୍କର ମସ୍ତିଷ୍କ ଯେତେବେଳେ ବିକୃତକ୍ଷମ ହେଲା, ସେତେବେଳକୁ କର୍ପୂର ଉଡ଼ି ଯାଇଥିଲା । ସ୍ୱଳ୍ପ ଭୂସମ୍ପତ୍ତି କୌଣସିମତେ ପରିବାରକୁ ଅଭାବ ମୁଖରୁ ରକ୍ଷା କରୁଥିଲା । କେଜେ ବାପାଙ୍କର ପୂର୍ବରୁ ଭାଳ ହୋଇଯାଇଥିଲା । କେବଳ ଜେଜେମା କୌଣସିମତେ ବାପାଙ୍କ ମୁହଁକୁ ଚାହିଁ ସମୟ ଅତିବାହିତ କରୁଥିଲେ ।

ବାପାଥିଲେ ଅତ୍ୟନ୍ତ ଭଦ୍ର, ଅଜାତଶତ୍ରୁ ବ୍ୟକ୍ତି । ଅତୀତର ଗୌରବ ସମ୍ପର୍କରେ ତାଙ୍କୁ ପିଲାଦିନୁ କାହାଣୀ ଶୁଣାଯାଇଥିଲା । ତେଣୁ ସେ ଥିଲେ ଅତି ମାତ୍ରାରେ ଅତୀତ-ସଚେତନ । ପରିବାରର ଅଭ୍ୟୁଦୟ ସ୍ୱପ୍ନ ଦେଖିବାହିଁ ଥିଲା ତାଙ୍କର ଏକମାତ୍ର ବିଳାସ ।

ବାପାଙ୍କର ମୋ ଉପରେ ଅଗାଧ ବିଶ୍ୱାସ ଥିଲା । ସେ ଭାବୁଥିଲେ ମୁଁ ଆମ ବଂଶର ଅତୀତର କୌଣସି କୃତୀପୁରୁଷର ପ୍ରତିଭା ନେଇ ଜନ୍ମ ହୋଇଛି ।

ମୋର ଚରିତ୍ରରେ ଲଜ୍ଜା ଓ ହୈନ୍ୟବୋଧର ମାତ୍ରାଥିଲା ପ୍ରଚୁର । ନିଃସଙ୍ଗତାର ମୁଁ ଥିଲି ଅକୃତ୍ରିମ ପ୍ରେମିକ । ତେଣୁ ଶ୍ରେଣୀରେ ସର୍ବୋଚ୍ଚ ନମ୍ବର ରଖିବା ସତ୍ତ୍ୱେ ମୁଁ ଜନପ୍ରିୟ ନଥିଲି ।

ସହଧର୍ମିଣୀ ପ୍ରଭା କାହିଁକି କେଜାଣି ଆଜି ବାରମ୍ବାର ମନେ ପଡ଼ୁଛି । ପ୍ରଭା ଥିଲା ଶରତ୍ ସକାଳର ଶେଫାଳୀଟିଏ । ପଲ୍ଲୀର କୋଳରେ ସେ ଥିଲା ଆବାଲ୍ୟ ଲାଳିତା । ତାର ଆଶାର ବିହଙ୍ଗ ବେଶୀଦୂର ଉଡ଼ିବା ଶିଖି ନଥିଲା । ତା ମତରେ ମୁଁ ଥିଲି ଏକ ଦେବଦୂତ ।

ମୋତେ ସନ୍ତୁଷ୍ଟ କରିବାଲାଗି ପ୍ରଭା କ'ଣ ନ କରିଚି ? ଅଭାବ ଓ ଦୁଃଖ ଭିତରେ ତା ମୁହଁରେ ସାମାନ୍ୟ ବେଦନାର ଆଭାସ ମଧ୍ୟ ପରିସ୍ଫୁଟ ହେବାକୁ ସେ ଦେଇନ ।

ବଣ ହରିଣୀଭଳି ତାର ସେଇ ଅସହାୟ ଆଖି ଦୁଇଟି ମୋର ସବୁବେଳେ ମନେ ପଡ଼ୁଚି ।

ପ୍ରଭାତର ସ୍ୱର୍ଗ ସନ୍ତାନମାନେ ଜାଗି ଉଠୁଛନ୍ତି । ତାର ଦୁଇଟି ଶାବକ ମୁନ୍ନା ଓ ଲୀନାକୁ ସେମାନେ ପିଭୃହର କରୁଛନ୍ତି ।

ତରୁଣର ସେଇ ହସ । ମୁଁ ବହୁତ ବ୍ୟକ୍ତିଙ୍କର ହସ ଦେଖିଛି କିନ୍ତୁ ଆଜି ତାହାର ହସ ତରୁଣର ହସଭଳି ମୋତେ ଆକୃଷ୍ଟ କରିନି । ତରୁଣର ହସରେ ଥିଲା ଅଭୂତପୂର୍ବ ଆଶ୍ୱାସନା ଆଉ ଅନ୍ୟହୀନ ଆତ୍ମବିଶ୍ୱାସ ।

Soldier, scholar, horseman, he ·····
(ସୈନ୍ୟ, ବିଦ୍ୱାନ୍, ଘୋଡ଼ାସବାର ଥିଲା ସେ ।)

ଏବେ ବି ଏଇ ସୂର୍ଯ୍ୟ ଚନ୍ଦ୍ର ହୀନ ଗୁହା ଭିତରେ ମୋର ସ୍ମୃତିସଙ୍ଗ ଭିଡ଼ିତା ମନେପଡ଼େ । ମନର ଭାବନାଗୁଡ଼ିକୁ ମୁଁ ଆଜି କାଲି ଶୃଙ୍ଖଳିତ କରିପାରୁନି । ସେମାନେ ଇଚ୍ଛା ଅନୁସାରେ ଯାଉଛନ୍ତି ଓ ଆସୁଛନ୍ତି ।

ତରୁଣର ଜୀବନୀ ଲେଖିବାପାଇଁ ମୁଁ କଲମ ଧରିଛି । ଘୋଡ଼ଟି ଘୋଡ଼ ଘଣ୍ଟାପରେ ମୁଁ କଲମ ବନ୍ଦକଲି ମୋର ମନେ ପଡ଼ୁନି । ମୋତେ ଫେର୍ ମୂଳରୁ ସବୁ ପଢ଼ିବାକୁ ପଡ଼ୁଛି ।

ନା, ଆଜି ଆଉ ନୁହେଁ । ଆଜି ମନଟା ଉଦାସ ଉଦାସ ଲାଗୁଛି । ଗୃହସ୍ଥ ଜୀବନର ସବୁ ଛୋଟ ଛୋଟ ଘଟଣା ମନେ ପଡ଼ୁଛି । ଗୃହସ୍ଥ ? ହଁ, ମୋ ଭଳି ଏକ ଅନୁପଯୁକ୍ତ ଲୋକ ମଧ୍ୟ ଗୃହସ୍ଥ ହୋଇଥିଲା । ଠିକ୍ ଅପେରାରେ ଯେମିତି ଲୋକ ବିଭିନ୍ନ ପାର୍ଟ ନିଅନ୍ତି ।

ହୁଏତ ବି ବର୍ଷର ମାସରେ କେତେଦିନ ମୋର ଉପସ୍ଥିତି ଉପଭୋଗ କରୁଥିଲେ ପରିବାରର ସମସ୍ତେ । କିନ୍ତୁ ତାରି ଭିତରେ ବହୁତ କଥା ଘଟିଯାଉଥିଲା । ପ୍ରେମ, ବିରହ, ମାନ ଅଭିମାନ । ବାପାଙ୍କର ନୀରବ ଭର୍ତ୍ସନା ଓ ବୋଉର ନିର୍ବାକ୍ ସହାନୁଭୂତି । ସେଇ କେତୋଟା ଦିନର ରହଣି ଭିତରେ ମୁଁ ପ୍ରଭାକୁ ଗଭୀର ଭାବରେ ଭଲପାଇ ବସିଥିଲି । ନିଜ ଭାଗ୍ୟକୁ ପ୍ରଶଂସା କରିଥିଲି ଯେ ମୋତେ ଏଭଳି ବଧୂଟିଏ ମିଳିଛି ।

ପ୍ରଭାର ଦିଗ୍‌ବଳୟରୁ ସୂର୍ଯ୍ୟ ସବୁଦିନପାଇଁ ଅସ୍ତମିତ ହୋଇଯାଇଛନ୍ତି । ଚନ୍ଦ୍ର, ତାର ବି ସେ ଆକାଶରେ କେବେ ଉଦିତ ହେବେନି । କେଉଁ ଆଶା କେଉଁ ଅନାଗତ ସ୍ୱପ୍ନ ଶିରିଶିରି ପବନର ମନହଜା ସୁରଭିଭଳି ପ୍ରଭାକୁ ଆଉ

ଉଲ୍ଲସିତ କରିଦେଇ । ସୁମେରୁର ନିସ୍ତରଙ୍ଗ ସମୁଦ୍ରଭଳି ପ୍ରଖର ମନ ପାଲଟି ଯାଇଥିବ ବରଫର ଏକ ସୀମାହୀନ ଚଟାଣ ।

ବହୁତ ଦିନ ହେଲା ଓ୍ୱାଲ୍ଟର୍ କାହିଁକି କେଜାଣି ମୋ ପ୍ରତି ସହାନୁଭୂତି-ଶୀଳ ହୋଇପଡ଼ିଛି । ନିରୀହ ଲୋକଟି ବୁଝିପାରୁନି କାହିଁକି ମୋତେ ବନ୍ଦୀଶାଳାରେ ରଖାଯାଇଛି ।

କେବେକେବେ ଆବେଗରେ ସେ ମୋର ପାଦସ୍ପର୍ଶ କରୁଛି । କହୁଛି, 'ବ୍ରାହ୍ମଣ ଆପଣ । କେତେ ପଢ଼ିଛନ୍ତି । କେତେ ଜାଣିଛନ୍ତି ।'

ଓ୍ୱାଲ୍ଟର୍‌ର ଆଖି କୋଣରେ ଅଶ୍ରୁକଣା ଆବିଷ୍କାରକରି ମୁଁ ବିସ୍ମିତ ହୋଇଛି । ସଇତାନ ମହଲରେ ଓ୍ୱାଲ୍ଟର୍ ଗୋଟିଏ ସନ୍ଥ ।

ବର୍ବରମାନେ ମୋ ଦେଶକୁ, ମୋ ଜାତିକୁ ନଷ୍ଟ କରିଦେଇଛନ୍ତି । କୁମାରୀର କୁମାରୀତ୍ୱ, ଯୁବକର ପ୍ରାଣଶକ୍ତି, ପ୍ରବୀଣର ବିବେଚନା : ସବୁ ସେମାନେ କିଣି ଦେଇଛନ୍ତି ।

ପାହାଡ଼ ପାହାଡ଼ ଜମାହୋଇଛି ବିଳାସ ଉପକରଣ । ମୋ ମାଟିର ପିଲାମାନେ ଟୋପାଏ ଦୁଧପାଇଁ ମାଆର ସ୍ତନକୁ କ୍ଷତବିକ୍ଷତ କରୁଛନ୍ତି । ଉପବାସୀ ମା ସ୍ତନରୁ କ୍ଷୀର ଝରୁନି । ସଇତାନମାନଙ୍କର ଉତ୍ସବ । ଭୂବନରେ ବିଅର, ସ୍ୟାମ୍ପେନ୍ ଲହରୀ ଖେଳୁଛି ।

ଅଧ୍ୟାପକ, ଡାକ୍ତର, ଓକିଲ : ସବୁରି ଆଖିରେ ମୁଁ ମେଷର ଚାହାଣୀ ଦେଖିଛି । ହାୟ ! ମୋ ଦେଶର ଏଇ କ୍ରୀତଦାସମାନେ କିଛି ଟଙ୍କାପାଇଁ ନିଜତ୍ୱକୁ ବିକି ଦେଇଛନ୍ତି ।

ଏ ଦେଶରେ କ'ଣ ଜଣେ କିଏ ଲୋକ ନାହିଁ ଏଇ ପ୍ରଶ୍ନ ପଚାରିବାକୁ, 'ଆହେ ବ୍ୟବସାୟୀ, ଅଫିସର୍ ବା ଜନନେତା, ତମର ତ ଏତେ ସମ୍ପତ୍ତି ନଥିଲା ? ତମେ ଏତେ କମ୍ ସମୟରେ ଏସବୁ ପାଇଲ କେଉଁଠୁ ? କୁହ, ତମ ଆଦାୟର ସୂତ୍ର ଆମେ ଜାଣିବାକୁ ଚାହୁଁ ।'

ଗୋଟିଏ ପୁଅ ଥିଲା, ଯା ଆଖିରେ ଆଗ୍ନେୟଗିରିର ଚମକ ଥିଲା, ଯା ବାଣୀରେ ଯାଦୁ ଥିଲା । ସେ ଅନାସକ୍ତ ଭାବରେ କହୁଥିଲା, 'ତମେ କେଉଁ

ଜନସ୍ରୋତରୁ ମୁକୁଳ ଜୀବନ । ତେଣୁ ସମସ୍ତ ପ୍ରବଞ୍ଚନାଲବ୍ଧ ସମ୍ପତ୍ତିପାଇଁ ତୁମକୁ ଜବାବ୍ ଦେବାକୁ ପଡ଼ିବ ।'

ତାକୁ ସେମାନେ ମାରିଦେଲେ । ସହରର ମଧ୍ୟାହ୍ନରେ ଅନ୍ଧକାର ମାଡ଼ି ଆସିଲା । ସନ୍ଧ୍ୟା କୋକେଇରେ ବୁଢ଼ାହୋଇ ମଶାଣିକୁ ଚାଲିଗଲା ଓ ନ୍ୟାୟର ଶବାଧାର ଉପରେ ଅସଂଖ୍ୟ କଣ୍ଟା ପିଠା ହୋଇଗଲା ।

ନା, ଆଜ ନୁହେଁ । ଆଖି ମୋର ଅଶ୍ରୁରେ ପୂରିଗଲାଣି । ଏଥର କାଗଜରେ ଅକ୍ଷର ସବୁ ଅସ୍ପଷ୍ଟ ହୋଇଯିବ ।

୩

ମହା ଚୂଡ଼ା ରାସ୍ତା । ସବୁ ସଙ୍କେତ, ସବୁ ଶଙ୍କା ନିର୍ଦ୍ଦିଷ୍ଟ । ଅନଷ୍ଟପୂଜାର ହେମାଳ ପବନ ନାହିଁ, କଣ୍ଟାବଣର ନିଷ୍ଠୁରତା ନାହିଁ; ମହାବନର ହେଣ୍ଟାଳ ନାହିଁ । ଇଲିୟଟ୍‌ଙ୍କ ଭାଷାରେ କଫି ଚାମ୍ଚରେ ମପା ଜୀବନ । ଆ ! ନଷ୍ଟପୂଜାର ଜୀବନ କେଡ଼େ ଉଷ୍ମ, କେଡ଼େ ଆଶାପ୍ରଦ !

ଯେଉଁମାନେ ଏ ମହାଚୂଡ଼ା ରାସ୍ତାରେ ଚାଲନ୍ତି ନାହିଁ ସେମାନେ ପାଗଳ ।

ପିଲାଙ୍କୁ ବାପ' ମା ଉପଦେଶ ଦିଅନ୍ତି, 'ଚାଲ, ଚାଲ, ଏହି ରାସ୍ତାରେ ଚାଲ ।'

ଶିକ୍ଷକ କହନ୍ତି, 'ଭଲ ପିଲା ହୁଅ । ସମସ୍ତେ ପ୍ରଶଂସା କରିବେ' ।

ସେହି ଭଲପିଲା ହେବାଲୋଭରେ ଅଚଳାୟତନ ସୃଷ୍ଟି ହୁଏ । ଗତାନୁଗତିକତାର ବୋଝ ମୁଣ୍ଡରେ ଚାପି ହୋଇଯାଏ । ମଣିଷ ପିଲା ହୁଏ କୁଣ୍ଡେଇ ଜମ୍ବା ମାଙ୍କଡ଼ ।

ମେଧାବୀ ଛାତ୍ର । ସଫଳ ଅଫିସର୍ । ଧନୀ ବ୍ୟବସାୟୀ ! ବାଃ ! ବାଃ ! ଦେଖ, ଶିଖ, ଅନୁକରଣ କର ।

କେବଳ ଅନୁକରଣ କରୁଥିଲେ ସଭ୍ୟତାର ରଥଚକ ଅଟକି ଯାଇଥାନ୍ତା । ଅଭ୍ୟୁଦୟର ଅଗ୍ନିଶିଖା ଧୂମିଳ ହୋଇଯାଇଥାନ୍ତା । ଚିରଦିନ ଅନ୍ଧକାର ଭିତରେ ପଥ ହରାଇଥାଆନ୍ତା ।

ନାଗଭୂଷଣ ମାଟିର ପିଲା ଚରୁଣ ।

କୋରାପୁଟର ଗାହାଡ଼ ନଈଠୁଁ ସେ ଶିଖିଚି ଶୃଙ୍ଖଳା । ନୟମଗିରିଠୁଁ ସେ ଶିଖିଚି ଅତୁଟ ଧୈର୍ଯ୍ୟ । କାଶୀପୁରର ଅଟ୍ଟୁଟା ବର୍ଷାଠୁଁ ସେ ଶିଖିଚି ସାହସ ।

ଖ୍ୟାତି ତାହାକୁ ଉଲ୍ଲସିତ କରିନ କିମ୍ବା କୁଖ୍ୟାତି ତାକୁ ବିଷର୍ଣ୍ଣ କରିନ ।

ସମାଜରେ ଶୀର୍ଷସ୍ଥାନ ଅଧିକାର କରିଥିବା ବ୍ରାହ୍ମଣ ବଂଶଜବୋଲି ମୋର ଯେଉଁ ଗର୍ବ ଥିଲା, ଭାଜିଗଲା ତାହା ତାସ୍‌ର ଘରଭଳି ।

ଉପଜାତି ସମାଜର ଏଇ ଯୁବକଟି ଉନ୍ମୋଚିଲା ମୋର ଜୀବନ ପଥକୁ ଆଲୋକିତକରି ମୋତେ କଲା ବିଗିହିତ ।

ରେଭେନ୍‌ସା କଲେଜର ହିରୋ ହୋଇଗଲା ଚରୁଣ । ଅମାନୁଷୀ ଶକ୍ତି ଓ ଦକ୍ଷତାର ପରିଚୟଦେଇ ସେ କଲେଜ ଟିମ୍‌କୁ ବିଜୟୀ କଲା ସମସ୍ତ ଫୁଟ୍‌ବଲ ମ୍ୟାଚ୍‌ରେ ।

ସ୍ପୋର୍ଟସ୍‌ମ୍ୟାନ ହୃମୀରିକା ! ଜେଭେଲିନ୍ ଓ ଡ଼ିସ୍‌କାସ୍‌ରେ ଭାଙ୍ଗିଦେଲା ସେ ପୁରୁଣା ରେକର୍ଡ ।

ଏତେ ଶକ୍ତି ଓ ଦକ୍ଷତା ଜଣ ଜଣକୁ ଦେବାରେ ସ୍ରଷ୍ଟା ପଗ୍ଭଇସାନ୍ତିନ କେମିତି ?

ନାଟକୋତ୍ସବରେ ଚରୁଣର ନାଁ ପୁଣି ବାୟୁମଣ୍ଡଳରେ ଘୂରି ବୁଲିଲା । କୋରାପୁଟର ଅକୃତ୍ରିମ ସ୍ୱଚ୍ଛନ୍ଦ ଜୀବନ ଯାହାରେ ଯୁଗ ଯୁଗଧରି ଯେଉଁ ନୃତ୍ୟର ଧାର ଲମ୍ବି ଯାଇଥିଲା, ତାର ଦାୟାଦ ଚରୁଣ ଶିକାରୀର ଉଦ୍ଦାମ ନୃତ୍ୟ ନାଚି କଟକ ସହରକୁ ଦୋହଲାଇ ଦେଇଥିଲା ।

ଚରୁଣର କୃତିତ୍ୱ ମୋର ମନରେ ଆନନ୍ଦର ପୁଷ୍ପ ଫୁଟାଉଥିଲା । ଯେଉଁମାନେ ଚରୁଣ ସହ ମୋର ବନ୍ଧୁତାକୁ ଉପହାସର ଦୃଷ୍ଟିରେ ଦେଖୁଥିଲେ, ସେମାନେ କଳେ ଆଗେଇ ଆସିଥିଲେ ଚରୁଣର ବନ୍ଧୁତା କାମନାକରି ।

ହଠାତ୍ ହନେ ସବୁ ଓଲଟପାଲଟ ହୋଇଗଲା । ଚରୁଣର ନନ୍ଦା କଲେଜ ସାରା କନ୍ଥୁରିତ ହୋଇଗଲା । ଖ୍ୟାତିର ଶୀର୍ଷତମ ଶୃଙ୍ଗ ଆରୋହଣ

କରିଥିବା ଚତୁରଙ୍କୁ ଛାତ୍ରମାନେ ଅତ୍ୟାଚାରର ନିର୍ମମତର ଗଣ୍ଡି ଭିତରକୁ ଠେଲି ଦେଇଥିଲେ ।

ଘଟଣାଟି ଘଟିଥିଲା ନଭେମ୍ବର ଚୋଦ୍ଦରେ । ସେ ଦିନ ରେଭେନ୍ସାରୁ ଚାରି ଦଳଜଣ ସହ ତପନ ଯାଇଥିଲା ଭୁବନେଶ୍ୱର, କାରଣ ଭୁବନେଶ୍ୱରରେ ଏକ ବିରାଟ ପ୍ରଦର୍ଶନୀ ଚାଲିଥିଲା । ଫେରିଲାବେଳେ କଟକ ଷ୍ଟେସନରେ ଟି.ଟି.ଆଇ ତାଙ୍କୁ ଟିକେଟ୍ ମାଗିଥିଲା । ତେବେ ତ୍ରିପାଠୀ ସେଇ ଛାତ୍ରଦଳରେ ସବୁଠାରୁ ଆଗରେ ଥିଲା । ଟିକେଟ୍ ମାଗିବା ସଙ୍ଗେ ସଙ୍ଗେ ତପନ ଟି.ଟି.ଆଇକୁ ଅଶ୍ଳୀଳ ଭାଷାରେ ଗାଳି ଆରମ୍ଭ କଲେ । ଟି. ଟି. ଆଇ ପ୍ରତିବାଦ କଲା । ତାପରେ ତପନର ମୁହଁରେ ଟି. ଟି. ଆଇର ଦୁଇଟି ଛାମୁଡ଼ା ପଡ଼ିଗଲା । ଲୋକାରଣ୍ୟ ଭିତରେ ଆହତ ଟି.ଟି.ଆଇଙ୍କୁ ଛାଡ଼ି ତପନ ଓ ତାର ଦଳ ଉଭାନ୍ ହୋଇଗଲେ । ରେଲୱେ କର୍ମଚାରୀମାନେ ପୋଲିସ ଥାନାରେ କେସ୍ କଲେ ଓ ପୋଲିସ୍ ତପନକୁ ଖୋଜି ବୁଲିଲା ।

ନଭେମ୍ବର ୨୧ରେ ରେଭେନ୍ସାରେ ଆରମ୍ଭ ହୋଇଗଲା ଷ୍ଟ୍ରାଇକ୍ପାଇଁ ପ୍ରସ୍ତୁତି । ତପନର ଦଳ କଲେଜରେ କୌଣସି ଧମକକୁ ଖାତିର ନକରି ଧର୍ମଘଟ ଆରମ୍ଭ କରିଦେଲେ । ଛାତ୍ରଙ୍କପ୍ରତି ଅଶୋଭନୀୟ ବ୍ୟବହାର କରିଥିବା ଟି.ଟି.ଆଇ ପ୍ରତି ଦଣ୍ଡ ନହେବା ପର୍ଯ୍ୟନ୍ତ ଛାତ୍ରସମାଜ, ସଂଗ୍ରାମ ଚାଲୁରଖିବ ବୋଲି ଘୋଷଣା ହୋଇଗଲା ।

ନଭେମ୍ବର ୨୨ରେ ରେଭେନ୍ସା ଥିଲା ମଶାଣି ଭୂଇଁଭଳି ନିର୍ଜନ । ଯେଉଁ କେତେଜଣ ଭଲଛାତ୍ର ଧର୍ମଘଟକୁ ପସନ୍ଦ କରୁନଥିଲେ, ସେମାନେ ଅସହାୟ ଚିତ୍ତରୁ ଏଭଳି ସବୁକଥାକୁ ମାନି ନେଇଥିଲେ । ପୋଲିସ୍ ଅତ୍ୟାଚାରର ବିରୁଦ୍ଧରେ ସ୍ଲୋଗାନ ଗଗନପବନ ଶବ୍ଦାୟିତ କରୁଥିଲା ।

ଛତ୍ରଶ୍ରୀଦଳର ସହାୟତାରେ ଓଡ଼ିଶାବ୍ୟାପୀ ଧର୍ମଘଟ କରିବାକୁ ତପନଗୋଷ୍ଠୀ ଯୋଜନା କରୁଥିଲେ । କଟକ ସହରର ସମସ୍ତ କଲେଜ ନେତାଙ୍କୁ ଏକ ସଭାରେ ମିଳିତ ହେବାପାଇଁ ଆହ୍ୱାନ କରାଯାଇଥିଲା ।

ସତକାଷ୍ଠ ଦଳର ଚଣ୍ଡୀମୁଣ୍ଡାମାନେ ସରକାର ପକ୍ଷପାତି, ଛାତ୍ରମାନଙ୍କୁ ନେଇ ଧର୍ମଘଟ ଭାଙ୍ଗିବାପାଇଁ ଉଦ୍ୟମ କରୁଥିଲେ । କିନ୍ତୁ କଥାକଥାକେ

ତଙ୍ଗାଦେଙ୍ଗାମାଗାଇଁ ପ୍ରସ୍ତୁତ ଖପନର ବପକ୍ଷରେ ଯିବାପାଇଁ କେହ ସାହସ କରୁନଥିଲେ ।

ନଭେମ୍ବର ୨୩ରେ ଭେବକ ଜନେତ୍ରର କ୍ଲାସ୍‌ରେ ଯୋଗ ଦେଇଥିଲି । ତପନ ବିପାଠୀର ଭକ୍ତଚକ୍ଷୁକୁ ଉପେକ୍ଷା କରି ତରୁଣ ସ୍ୱମୀଇକା କଲେଜ ଯାଇଥିଲା । ସ୍ୱମୀଇକାର ଶାରୀରିକ ଶକ୍ତି ସମ୍ପର୍କରେ ଅଜ୍ଞ ନଥିବାରୁ ତପନ ଓ ତାର ଗୋଷ୍ଠି ଉକ୍ତ ଘଟଣାକୁ ଦେଖିବା ଚୁପ୍ ହୋଇଯାଇଥିଲେ । ସ୍ୱମୀଇକା ଧାଁରେ 'ସର୍ବାଣ୍ଡ ସ୍ୱମସ୍ତ' ଷ୍ଟୋଖାନ୍ କାଟୁବାଡ଼ର ନିଷ୍ପକ୍ଷତାକୁ ନଷ୍ଟକରି ଦେଇଥିଲା ।

ସ୍ୱମୀଇକା ଥିଲା ବହୁ ଛାତ୍ର ଛାତ୍ରୀଙ୍କର କୌତୁହଳର କେନ୍ଦ୍ରସ୍ଥଳ । ଚେଇଶିର ସନ୍ଧ୍ୟାରେ ସ୍ୱମୀଇକା ଓାକବ ଶାଇଲ ସ୍ୱୟଂ ମୁଖ୍ୟମନ୍ତ୍ରୀଙ୍କଠାରୁ । ସରକାରୀ ଦଳର ଜଣେ ଏମ୍. ଏଲ୍. ଏ. ତାକୁ ଦେଖାଇଣ ତାଠ୍ ଷ୍ଟ୍ରାକ୍ ବିରୋଧୀ ମନ୍ତବ୍ୟ ମାଗିଥିଲେ ଓ ମୁଖ୍ୟମନ୍ତ୍ରୀ ତା ସହିତ ସାକ୍ଷାତ ବ୍ୟବସ୍ଥାକୋଲ କରିଥିଲେ । ସ୍ୱମୀଇକା ତାର ସ୍ୱଭାବସୁଲଭ ଉଦାସୀନତାର ସହ ଲୋଭନୀୟ ପ୍ରସ୍ତାବଗୁଡ଼ିକୁ ପ୍ରତ୍ୟାଖାନ କରିଥିଲା ।

ତପନ ଗୋଷ୍ଠୀର ଅନେକରେ ଅପ୍ରେମୀର ସ୍ୱମୀଇକାର ପ୍ରତିଷ୍ଠାକୁ ସମାପ୍ତ କରିଦେଇଥିଲା । ସରକାରୀ ଦଳର ଛାତ୍ରମାନେ ମଧ୍ୟ ମୁଖ୍ୟମନ୍ତ୍ରୀଙ୍କ ସହ ସାକ୍ଷାତଭଳି ଲୋଭନୀୟ ପ୍ରସ୍ତାବକୁ ପ୍ରତ୍ୟାଖାନ କରିଥିବା ସ୍ୱମୀଇକା ବିଷ ଚକ୍ଷୁରେ ଦେଖୁଥିଲେ ।

ଏକଦା କଲେଜର ସବୁଠାରୁ ଜନପ୍ରିୟ ତରୁଣଟି ଜନରବର ବଳନ୍ତ ଗ୍ରାସରେ ପଡ଼ି ବନ୍ଧୁଶୂନ୍ୟ ହୋଇଗଲା ।

ସ୍ୱମୀଇକାର ସେଇ ଦୁର୍ଦ୍ଦିନରେ ମୁଁ ଥିଲି ଏକମାତ୍ର ଛାତ୍ର । ଯେ କି ବନ୍ଧୁତାର ସୂତ୍ରକୁ ଛିନ୍ନ କରିନଥିଲା । ତଥାପି ଅପ୍ରେମୀର ଧୂମ ମୋ ମସ୍ତିଷ୍କରେ ବି କମ୍ ପ୍ରଭାବ ବିସ୍ତାର କରିନଥିଲା ।

ଧର୍ମଘଟ ଏକ ନିରଙ୍କୁଶ ଜୟରେ ପ୍ରତ୍ୟାହୃତ ହୋଇଗଲା । ତପନ ଓ ତାର ଗୋଷ୍ଠି କେଣ୍ କିଛି ମାଲ ହାତପେଠ କଲାପରେ ମୁଖ୍ୟମନ୍ତ୍ରୀଙ୍କ ପ୍ରସ୍ତାବ ସେମାନଙ୍କପାଇଁ ଯୁକ୍ତିଯୁକ୍ତତାର ସୀମା ଭିତରକୁ ଚାଲି ଆସିଲା ।

ସ୍କୁଲ ଧର୍ମଘଟ ତପନର ପ୍ରଭାବ ଅସମ୍ଭବଭାବରେ ବୃଦ୍ଧି କରିଦେଇ ଥିଲା । ଅଧିକନ୍ତୁ ଅଧିକ ଆକର୍ଷକ ବ୍ୟକ୍ତିତ୍ୱର ଥାଇ ତପନ ସମ୍ମୁଖରେ ଥୋଇଲାପରେ ଏକ ଶାନ୍ତ, ସ୍ନିଗ୍ଧ, ଚନ୍ଦ୍ରିକା ଚର୍ଚ୍ଚିତ ରଜନୀରେ ତପନ ସରକାରୀ ଦଳରେ ଯୋଗ ଦେଇଦେଲା ।

ସମୟର ପ୍ରଭାବରୁ ହେଉ କିମ୍ବା ମୋହଭଙ୍ଗ କାରଣରୁ ହେଉ, ସ୍ୱମୀଲିକାର ପୁରୁଣା ବନ୍ଧୁମାନେ ଜଣକପରେ ଜଣେ ତା ପାଖକୁ ଫେରି ଆସିଥିଲେ । ସେମାନେ ବିଦାୟ ନେଲାବେଳେ ତରୁଣୀ ବ୍ୟସ୍ତ ହୋଇନଥିଲା, କିମ୍ବା ସେମାନେ ପୁନର୍ବାର ତା ପାଖକୁ ଫେରି ଆସିଲାପରେ ସେ ଭାବପ୍ରବଣ ହୋଇନଥିଲା । ସ୍କୁଲ ଧର୍ମଘଟ ସମୟର ଘଟଣାବଳୀ ଧୀରେ ଧୀରେ ସମସ୍ତଙ୍କ ମାନସ ଜଗତର ଚେତନ ଅଞ୍ଚଳରୁ କୁହେଳି ଭେଦି ଅବଚେତନକୁ ଚାଲି ଯାଉଥିଲା । କେବଳ ଦୁଇଜଣଙ୍କ ମନ ଅଙ୍ଗନରେ ଧର୍ମଘଟ ସମୟର ଘଟଣା ଗୁଡ଼ିକର କଳାକନା ଗୁଡ଼ି ସେମାନଙ୍କର ନୃତ୍ୟ ବନ୍ଦ କରିନଥିଲେ । ସ୍ୱମୀଲିକା ମନରେ ଦେଶର ନେତାମାନଙ୍କର ସ୍ୱପୋଷାସି ସମ୍ପର୍କରେ ଏକ ଅଲଗା ଧାରା ପଡ଼ିଥିଲା ଓ ସେ ବହୁ ସମୟରେ ଚିନ୍ତାମଗ୍ନ ରହୁଥିଲା । ତପନ ସ୍ୱମୀଲିକାକୁ ଈର୍ଷା କରୁଥିଲା ଓ ସମୟ ସୁଯୋଗ ଆସିଲେ ତାର କ୍ଷତି ସାଧନ କରିବାକୁ ବଦ୍ଧପରିକର ଥିଲା ।

ପୂର୍ବରୁ ଏକ ଉଚ୍ଛଳ ଝରଣାଭଳି ବହିଯାଉଥିବା ସ୍ୱମୀଲିକା ଏବେ ପାହାଡ଼ ଭଳି ମୌନ ସ୍ତବ୍ଧତାରେ ଅଚ୍ଛନ୍ନ ଥିଲା । ତାର ବହିର୍ମୁଖୀ ପ୍ରବୃତ୍ତିଗୁଡ଼ିକ ସତେ ଯେମିତି ଧକ୍କା ଖାଇ ତାର ଅନ୍ତର ପ୍ରଦେଶରେ ଆସନ ଜମାଇ ସାରିଥିଲେ ।

ଦିନେ ସ୍ୱମୀଲିକା କହିଲା, 'ସାକେତ ! କେତେ ଦିନ ହେଲା ମୋର ମନ ଭଲ ରହୁନାହିଁ । ମୁଁ ଭାବୁଛି ପଢ଼ାପଢ଼ି ଛାଡ଼ିଦେବି ।'

ସ୍ୱମୀଲିକାର ଦୁଃଖ ମୁଁ ବୁଝିପାରିଥିଲି । ମୁଁ କହିଲି, 'ନା ତରୁଣୀ, ଏଭଳି ନିଷ୍ପତ୍ତିକଲେ ତମେ ଭୁଲ କରିବ ।'

ତରୁଣୀର ହୃଦୟରେ ଇସ୍ପାତ ପ୍ରବେଶ କରିସାରିଥିଲା । ଏ ସ୍ୱପୋଷାଟ ସମାଜର ଜଡ଼ତା ତାର ଚିନ୍ତାଧାରକୁ ଏକ ନୂତନ ସରଣୀରେ ଯିବାପାଇଁ ବାଧ୍ୟ କରିଥିଲା ।

ତରୁଣ ତାର ନିଷ୍ପତ୍ତି କାର୍ଯ୍ୟକାରୀ ନିଶ୍ଚୟ କରିଥାନ୍ତା, କିନ୍ତୁ ଏ ମଧ୍ୟରେ ଆଜି ଏକ ଘଟଣା ଘଟିଗଲା ଯାହା ତରୁଣର ଦୃଢ଼ ମନକୁ ଦୃଢ଼ତର କରିଥିଲା ।

ବହୁ ଦିନ ଧରି ମୋର ତରୁଣ ସହିତ ତାର୍କିକ କଥୋପକଥନ ହୋଇ ପାରିନଥିଲା । ଆଷାଢ଼ ଜଳଦଭଳି ତରୁଣ ଗମ୍ଭୀର ରହୁଥିଲା ଓ ମୋର ପଢ଼ା-ପଢ଼ିର ମାତ୍ରା ମଧ୍ୟ ମୁଁ ବହୁତ ବଢ଼ାଇ ଦେଇଥିଲି ।

ଘଟଣାଟି ସମ୍ଭବତଃ ମାର୍ଚ୍ଚ ମାସରେ ଘଟିଥିଲା । ଦିନେ ରାତିରେ ମୁଁ ଶୋଇବାପାଇଁ ପ୍ରସ୍ତୁତ ହେଉଛି, ମୋର ଜଣେ ବନ୍ଧୁ ଆସି ଖବର ଦେଲେ ଯେ ହମୀରିକା ସାଙ୍ଘାତିକ ଭାବରେ ଆହତହୋଇ ମେଡ଼ିକାଲକୁ ବୁହାହୋଇଯାଇଛି ।

ମୋର ମନେହେଲା ଯେପରି ମୋର ପାଦତଳୁ ସମସ୍ତ ମାଟି ଖସିଯାଉଛି ଓ ମୁଁ ତ୍ରିଶଙ୍କୁଭଳି ଶୂନ୍ୟରେ ଝୁଲିରହିଛି । କୌଣସିମତେ ଆତ୍ମ ସମ୍ଭରଣକରି ମୁଁ ପଚାରିଲି 'କେମିତି ଏ ଘଟଣା ଘଟିଲା ?'

'ଗୁଣ୍ଡାମାନେ ଛୁରି, ଲାଠିଧରି ହମୀରିକାକୁ ଆକ୍ରମଣ କରିଥିଲେ ।'

ଆଉବେଶୀ ଶୁଣିବାର ଧୈର୍ଯ୍ୟନଥିଲା । ମୁଁ ସେଦିନ ପ୍ରଥମଥର ପାଇଁ ଅନୁଭବ କରିଥିଲି ଯେ ହମୀରିକା ମୋ ହୃଦୟରେ ଏଭଳି ଏକ ଜାଗାରେ ସ୍ଥାନ ଦଖଲକରି ବସିଛି, ଯେଉଁଠି ଆଉ କୌଣସି ବ୍ୟକ୍ତିକୁ ମୁଁ କସ୍ମିନ୍‌କାଳେ ବସାଇପାରିବି ନାହିଁ ।

ଚରମ ବ୍ୟସ୍ତତାର ସହିତ ମେଡ଼ିକାଲ୍‌ରେ ପହଞ୍ଚିଲି । ହମୀରିକାକୁ ଦେଖିବାକୁ ଅନୁମତି ମିଳିଲା । ମୋତେ ଦେଖି ତାଚକ୍ଷୁରେ ଆନନ୍ଦର ଝଲକ ଫୁଟି ଉଠିଲା । ଜଣେ ମେଡିକାଲ ଛାତ୍ର କହିଲେ, 'ଏତେବଡ଼ ଆଘାତ ଖାଇ ଜଣେ ଯେ ବଞ୍ଚିପାରେ, ଏହା ମୁଁ ପ୍ରଥମ ଥରପାଇଁ ଦେଖିଲି ।'

ଆଃ ! ହମୀରିକାକୁ କେମିତି ବୁଝିପାରିଥାନ୍ତେ ଚରମ ଜଡ଼ବାଦୀ ସେହି ଡ଼ାକ୍ତରମାନେ । ହମୀରିକା ତ ଆଉ ସାଧାରଣସ୍ତରର ନଥିଲା । କୋରାପୁଟ ପାହାଡ଼ର କାଠିନ୍ୟ, ନଦୀର ଛନ୍ଦମୟତ୍ୱ ଏବଂ ଅରଣ୍ୟର ଗାମ୍ଭୀର୍ଯ୍ୟ ଏକାଠି ମିଶି ତା'ର ଦେହ ଓ ମନକୁ ଗଢ଼ିଥିଲେ ?

ହମୀରିକାର ଏଭଳି ଅବସ୍ଥା କେମିତି ହେଲା, ସେ ସମ୍ପର୍କରେ ମୁଁ ଯେତେବେଳେ ଖବରପାଇଲି, ସ୍ତବ୍ଧ ହୋଇ ଯାଇଥିଲି ।

ପ୍ରଥମ ଶୋ ସିନେମାରୁ ସ୍ୱମୀଭକା ଫେରୁଥିଲା ଦଳେ ବନ୍ଧୁଙ୍କସହ । ସିନେମାଠାରୁ ଅଳ୍ପଦୂରରେ ସେ ଦେଖିଲା ଜଣେ ତରୁଣୀକୁ ଦଳେ ଯୁବକ ଘେରିଯାଇଛନ୍ତି । ତରୁଣୀଟିର ଅସହାୟ ଚାହାଣୀର ପରିସର ମଧ୍ୟରୁ ପଳାୟନ କରିବାପାଇଁ ସମସ୍ତେ ବ୍ୟସ୍ତ ହୋଇପଡ଼ିଛନ୍ତି କାରଣ ତରୁଣୀଟିକୁ ଘେରିଯାଇଥିବା ଯୁବକମାନେ ସମସ୍ତେ ରାଜମିସ୍ତ୍ରୀମାନଙ୍କସହ ସମ୍ପର୍କ ରଖିଥିବା ନାମଜାଦା ଗୁଣ୍ଡା ।

ତରୁଣର ଜଣପ୍ରତି ଓ କଲେଜ ଛାତ୍ରସୁଲଭ ଗୋଷ୍ଠୀଭିତ୍ତିକ ସାହସ କେତେକ ଛାତ୍ରଙ୍କୁ ଉତ୍ସାହିତ କରିଥିଲା ତରୁଣୀ ସମ୍ପର୍କରେ ଗୁଣ୍ଡାମାନଙ୍କୁ କେତେକ ପ୍ରଶ୍ନ ପଚାରିବାପାଇଁ ।

ବେପରୁଆ ଭାବରେ ଜଣେ ବପୁବନ୍ତ ଯୁବକ ସେମାନଙ୍କୁ କହିଦେଲା, 'ତମେ ତମ ବାଟରେ ଯାଅ ବାବୁ । ଆମ ବାଟରେ ଠିଆହେଲେ ଚୁରମାଡ଼ ଖାଇବ ।'

ଅପମାନକୁ ପିଇ ପିଇ କେତେଜଣ ଛାତ୍ର ସେଠାରୁ ଦୁରେଇ ଯାଇଥିଲେ ଏହାକହି ଯେ ଯେଉଁସବୁ କାର୍ଯ୍ୟପାଇଁ ପୋଲିସ୍ ଦରମା ନେଉଛି, ସେସବୁ ବିଷୟ ନେଇ ଛାତ୍ରମାନେ ମୁଣ୍ଡଖେଳାଇବା ଉଚିତ୍ ନୁହେଁ ।

ଝିଅଟିର ଆଖିରୁ ଧାରଧାର ଲୁହ ଗଡ଼ିଯାଉଥିଲା ଏବଂ ତାକୁ ଜଣେ ଜବରଦସ୍ତ ରିକ୍ସା ଉପରେ ବସାଇବାକୁ ଯାଉଥିଲା ।

ତରୁଣ ସ୍ୱମୀଶକା ପଚାରିଲା, 'ଝିଅଟିର ଇଚ୍ଛା ବିରୁଦ୍ଧରେ ଆପଣମାନେ ତାକୁ ନେଇଯାଉଛନ୍ତି କାହିଁକି ?'

କେତେଜଣ ଯୁବକଙ୍କର କ୍ରୁଦ୍ଧ ଚାହାଣି ତରୁଣ ଉପରେ ଘେରିଏ ବୁଲି ଆସିଲା, ହଠାତ୍ ଜଣେ ଯୁବକ ଚିତ୍କାର କଲା, 'ଇଏତ !' ଆଉ ଜଣେ କହିଲା, 'ହଁ, ବାବୁ ତ ପୁଣି' କଥା କହିଥିଲା ।'

ତାପରେ ସେମାନେ ମିଳିତଭାବରେ ତରୁଣକୁ ଆକ୍ରମଣ କରିଥିଲେ । କେବଳ ଦୁଇଜଣଙ୍କୁ ଛାଡ଼ି ତରୁଣର ଆଉ ସମସ୍ତ ସାଥି ଊର୍ଦ୍ଧ୍ୱଶ୍ୱାସରେ ପଳାୟନ କରିଥିଲେ । ଜଣେ ଯୁବକ ଉଚ୍ଚସ୍ୱରରେ ଚିତ୍କାର କଲା, 'ଶଳା କେବଳ ଜଣେ ।' ଆଉ ଦୁଇଜଣଙ୍କୁ ଅତି ସହଜରେ ଗୁଣ୍ଡାମାନେ କାବୁ କରି ନେଇଥିଲେ ।

ପାହାଡ଼ର କଠୋର ପ୍ରଦେଶରେ ବାଘ, ଭାଲୁ ଆଦି ପଶୁ ପୁଚ୍ଛ ଧରି ଯେଉଁମାନେ ଲଢ଼େଇ କରି ଆସିଥିଲେ ଜୀବନ ଧାରଣ ପାଇଁ ସେହିବଂଶର ସନ୍ତାନ । ସଭ୍ୟନଗରୀ କଟକରେ ବାଘଭାଲୁଠାରୁ ଅଧିକ ହିଂସ୍ର ଦଳେ ଯୁବକଙ୍କ ସହ ପ୍ରାଣମୂର୍ଚ୍ଛା ଲଢ଼ିଥିଲା ଓ ବୁନ୍ଦା ବୁନ୍ଦା ରକ୍ତ ତାର ଐତିହାସିକ ମାଟିକୁ ପବିତ୍ର କରିଥିଲା । ତିନି ଯୁବକଜଣ ଗୁଣ୍ଡାଙ୍କୁ ପ୍ରଚଣ୍ଡ ଆଘାତ ଦେଇ ହ୍ରମୀରିକା ଯେତେବେଳେ ରାଜପଥ ଉପରେ ଢଳିପଡ଼ିଲା ରକ୍ତର ପୋଖରୀ ଭିତରେ, ସେତେବେଳକୁ ରାସ୍ତା ଲୋକାରଣ୍ୟ ହୋଇ ସାରିଲାଣି ଓ ଦଳେ ପୋଲିସ୍ ଗଣ୍ଡଗୋଳକାରୀଙ୍କୁ ଜବତ୍ କରିସାରିଲେଣି । ହ୍ରମୀରିକା ଯେ ମୃତ ଏ ଧାରଣାକୁ ଭୁଲ ପ୍ରମାଣିତ କରି ମେଡ଼ିକାଲରେ ଯେତେବେଳେ ହ୍ରମୀରିକା ଚକ୍ଷୁ ଖୋଲିଲା, ଡାକ୍ତରମାନେ ମଧ୍ୟ ଆଶ୍ଚର୍ଯ୍ୟ ହୋଇଯାଇଥିଲେ ।

ଛାତ୍ରଙ୍କସହ ଗୁଣ୍ଡାଙ୍କ ଗଣ୍ଡଗୋଳକୁ କେନ୍ଦ୍ରକରି ଦଳେ ଛାତ୍ର ଯେତେବେଳେ ରେଭେନ୍ସାରେ ଧର୍ମଘଟର ଡ଼ାକରା ଦେଲେ, ତପନ ଓ ତାର ବନ୍ଧୁମାନେ ଯୁକ୍ତି, ଭୟ ଓ ଅର୍ଥର ଯଥେଚ୍ଛା ବ୍ୟବହାର କରିବାକୁ ଲାଗିଲେ । ଶେଷରେ ଅନ୍ୟାୟ ହିଁ ଜୟଯୁକ୍ତ ହେଲା । ତପନର ନେତୃତ୍ୱରେ ଦଳେ ଛାତ୍ର ମୁଖ୍ୟମନ୍ତ୍ରୀଙ୍କ ନିକଟକୁ ଗଲେ ସମସ୍ତ ଘଟଣାଟିର ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ ଦାବୀ କରିବାପାଇଁ ।

ଯେଉଁ ଅନାଥା ବାଳିକାର ଇଜ୍ଜତ ରକ୍ଷାପାଇଁ ତରୁଣ ରକ୍ତ ଢାଳିଦେଲା ସେହି ବାଳିକାଟିର ସୌନ୍ଦର୍ଯ୍ୟ ହିଁ ତାର ଶ୍ରେଷ୍ଠ ଶତ୍ରୁ ରୂପେ ଦେଖାଦେଲା । ପୋଲିସ ଏବଂ କେତେଜଣ ସ୍ୱୈରମର୍ଦ୍ଦା ତାର ଶରୀର ଉପରେ ବହୁ ପରୀକ୍ଷା ନିରୀକ୍ଷା କଲାପରେ ତାକୁ ପତିତା ସମାଜ ଭିତରକୁ ଠେଲି ଦେଇଥିଲେ । ଅନ୍ୟ ଏକ ପରିସ୍ଥିତିରେ ସମାଜର ଶିକାର ଏଇ ଝିଅ ସର୍ବଜୟାସହିତ ମୋର ଦେଖା ହୋଇଥିଲା ଓ ଅଶ୍ରୁଳ କାହାଣୀର ଅନ୍ତରାଳରେ ଧପ୍‌ଧପ୍ କରୁଥିବା ଏକ ପବିତ୍ର ହୃଦୟକୁ ମୁଁ ସେଦିନ ଆବିଷ୍କାର କରିଥିଲି । ସର୍ବଜୟାର କାହାଣୀ ଲେଖିବା ପାଇଁ ଏବେ ସମୟ ଆସିନି ।

କେବଳ ଗୋଟିକୁ ଛାଡ଼ିଦେଲେ ଓଡ଼ିଶାର ଅନ୍ୟ କୌଣସି ଖବରକାଗଜ ପ୍ରକୃତ ଘଟଣାକୁ ଛାପିନଥିଲେ । ଯେଉଁ ଗୋଟିକ ଖବର କାଗଜ ଆଂଶିକ ସତ୍ୟକୁ ପ୍ରକାଶ କରିବାର ସାହସ ଦେଖାଇଥିଲା, ସେହି କାଗଜର ସାମ୍ପାଦକ ଓ ସମ୍ପାଦକଙ୍କୁ ଧମକ ଦିଆଯାଇଥିଲା ।

ସରକାରୀ ଦଳର ବଡ଼ ପଣ୍ଡାମାନଙ୍କ ହସ୍ତକ୍ଷେପ ଫଳରେ ଗୁଣ୍ଡାମାନଙ୍କ ଚତୁର୍ଦ୍ଦିଗରେ ପୋଲିସର ସକ୍ରିୟତା ହ୍ରାସ ପାଇଥିଲା । ପ୍ରଖ୍ୟାତ ଆଇନଜୀବୀମାନେ ନିଜର ଖ୍ୟାତିବୃଦ୍ଧି ଓ ଅର୍ଥଲାଭପାଇଁ ଉପଯୁକ୍ତ ମୂଲ୍ୟନେଇ ଅପରାଧୀମାନଙ୍କୁ ସମ୍ମାନିତ ନାଗରିକ ସାବ୍ୟସ୍ତ କରାଇପାରୁଥିଲେ ।

ପନ୍ଦର ଦିନପରେ ସ୍ୱମୀରିକା ଯେତେବେଳେ ଡାକ୍ତରଖାନାରୁ ଫେରିଲା, ତା ଦେହରେ ଅଧରର ଚୁମ୍ବନ ଚିହ୍ନଗୁଡ଼ିକ ସୁସ୍ପଷ୍ଟ ଥିଲା । ସେତେବେଳକୁ ନିଷ୍କ୍ରିୟତାକୁ ଭଲ ମଣିଷର ମାପକାଠି ଭାବୁଥିବା ସମାଜ ସ୍ୱମୀରିକାର ତ୍ୟାଗକୁ ପାଶୋରି ସାରିଥିଲା ।

ବହୁ ରକ୍ତ ଝରିଲ ସ୍ୱମୀରିକା ଦୁର୍ବଳ ହୋଇପଡ଼ିଥିଲା । ତଥାପି ଶରୀର ଦୁର୍ବଳ ହେଲେ ବି ତାର ଇସ୍ପାତ କଠିନ ମନ କୌଣସି ସାଲିସ୍ ମୂଳକ ପଦକ୍ଷେପ ନେବାକୁ ପ୍ରସ୍ତୁତ ନଥିଲା ।

ବହୁତ ସମୟ ଧରି ଲେଖିବା ଫଳରେ ମୋର ପିଠିରେ ବ୍ୟଥା ଆରମ୍ଭ ହୋଇଗଲାଣି । ମୁଁ ସ୍ୱମୀରିକାର ଜୀବନୀ ଲେଖି ଶେଷ କରିପାରିବି କି ନାହିଁ, ଏ ସନ୍ଦେହ ମୋ ମନରେ ଦେଖା ଦେଉଛି । ଆଜ ଆକାଶ କେମିତି ଥିବ ? ବହୁବର୍ଷ ହେଲା ମୋର ଆକାଶ ସହ ସମ୍ପର୍କ ତୁଟିଯାଇଛି । ପିଲାବେଳେ ବର୍ଷପରେ ବର୍ଷ ଟାଙ୍ଗି ରାତିରେ ମୋର ନିଦ ଭାଙ୍ଗିଯାଉଥିଲା । ମନେ ହେଉଥିଲା ମୋତେ ଯେମିତି ଆକାଶ ଡାକୁଛି । ମୁଁ ବାହାରକୁ ଚାଲି ଆସୁଥିଲି ବାରେଣ୍ଡା ପାରିହୋଇ ଖୋଲା ଜାଗାରେ ଠିଆହୋଇ ଆକାଶକୁ ଚାହିଁ ରହୁଥିଲି ପ୍ରହର ପ୍ରହର ଧରି ।

ଆକାଶ ମତେ ପ୍ରେରଣା ଦଉଥିଲା । ଅତୀତକୁ ଜୀବନ୍ତ କରୁଥିଲା । ମିଟି ମିଟି କରୁଥିବା ତାରମାନେ ମୋତେ ଅନନ୍ତ କାଳର ବ୍ୟାପ୍ତି ସମ୍ପର୍କରେ ସଚେତନ କରୁଥିଲେ ।

ଆଜ କାହିଁକି ବାରମ୍ବାର ମନେ ପଡ଼ୁଛି ଶ୍ରୀକୃଷ୍ଣଙ୍କର ଦ୍ୱାରିକାଯାତ୍ରା କଥା । ସ୍ୟନ୍ଦନ ପ୍ରସ୍ତୁତ । ସାତ୍ୟକି ଡାକିଲେ, 'ଆସ ଯାଦବକୁଳାଧିପତି, ସମୟ ଅତିକ୍ରାନ୍ତ ହୋଇଯାଉଛି ।'

କି ଦୁରନ୍ତ ଅସ୍ୱାଭାବିକ ପରିସ୍ଥିତି । ସ୍ୱାଧୀନତା ରକ୍ଷା କରିବା ଆଉ ମଥୁରାରେ ରହିବା : ଦୁଇଟିର ସହାବସ୍ଥାନ ଆଉ ସମ୍ଭବ ହେଲାନି । ଚକ୍ରବର୍ତ୍ତୀ

ଜରାସନ୍ଧର ଦୌରାତ୍ମ୍ୟ ଯାଦବକୂଳକୁ ଅସ୍ଥିର କଲା । ତାପରେ ଆରମ୍ଭ ହେଲା ସେଇ ଐତିହାସିକ ଯାତ୍ରା ।

ପଛରେ ପଡିରହିଲା ସମୃଦ୍ଧ ନଗରୀ, ସୁନ୍ଦର ଉଦ୍ୟାନ, ଗଗନଚୁମ୍ବୀ ଅଟ୍ଟାଳିକା, ଘଣ୍ଟା ମୁଖରିତ ମନ୍ଦିର : ସମସ୍ତ କିଛି । ଜନ୍ମଭୂମିର ମୋହମୟୀ ଡାକରାକୁ ଏଡ଼ିଲା ଯାଦବ 'ବୀରମାନଙ୍କୁ । ଆଗରେ ଅନିଶ୍ଚିତ ଭବିଷ୍ୟତ । କେବଳ ଗୋଟିଏ ଆଶ୍ୱାସନା, 'ଶ୍ରୀକୃଷ୍ଣ ସାଥିରେ ଅଛନ୍ତି ।'

ବିଶ୍ୱ ଇତିହାସରେ ଏଇ କରୁଣ ଅଧ୍ୟାୟର ବହୁବାର ପୁନରାବୃତ୍ତି ହୋଇଛି । ଧର୍ମ-ସ୍ୱାଧୀନତାକାମୀ ୟୁରୋପବାସୀ ଦଳ ଦଳ ହୋଇ ୟୁରୋପ ଛାଡ଼ି ଚାଲିଯାଉଛନ୍ତି । ଏକ ନୂତନ ମହାଦେଶର ବନ୍ୟ ସବୁଜିମା ସେମାନଙ୍କୁ ସ୍ୱାଗତ କରିଛି । ଗଢ଼ି ଉଠିଛି ଆଧୁନିକ ସଭ୍ୟତାର ଜନ୍ମଦାତ୍ରୀ ଆମେରିକା । ଆଜି ଘୃଣ୍ୟ ଜାତି ହତ୍ୟା ଯଜ୍ଞର ସମିଧ ହୋଇଯାଉଛନ୍ତି ସେଠାର ଆଦିମ ଅଧିବାସୀ ଲୋହିତ ଭାରତୀୟ ।

ସ୍ୱାଧୀନତା ଠାରୁ ବୋଧହୁଏ ପ୍ରିୟବସ୍ତୁ ସାରା ପୃଥିବୀରେ ମଣିଷର ଆଉ କିଛି ନାହିଁ । ଦୁଃଖ, ଅନାଟନ, ବିପଦର ସର୍ବନାଶୀ ଆଘାତ : ସବୁ କିଛି ମଣିଷ ସହିଯାଇଛି କେବଳ ତାର ସ୍ୱାଧୀନତା ରକ୍ଷା କରିବାପାଇଁ ।

ନା, ଆଉ ନୁହେ । ମଣିଷର କୁଟିଳତା ତାର ସ୍ୱାଧୀନତାକୁ ଏଥର ନିଶ୍ଚିହ୍ନ କରିଦେବ । ଶତାବ୍ଦୀ ଶତାବ୍ଦୀ ଧରି ବହୁ ଶତ୍ରୁଙ୍କର ମୁକାବିଲା ମଣିଷ କରିଛି । ଉଦ୍ୟତ ବିପଦର ଦଂଶନକୁ ବେଖାତିର କରି ମଣିଷ ଆଗେଇ ଯାଇଛି ।

କିନ୍ତୁ ବିଂଶ ଶତାବ୍ଦୀ ! ଏ ଶତାବ୍ଦୀରେ ମଣିଷ ଅତ୍ୟନ୍ତ ଅସହାୟ ହୋଇପଡ଼ିଛି । ବିଜ୍ଞାନର ଦୈତ୍ୟପାଶ ମଣିଷର ମଣିଷତ୍ୱକୁ ରକ୍ଷା କରିପାରୁନି, ବରଂ ବିପନ୍ନ କରୁଛି । ସରକାର-ଗୋଲାମ ରେଡ଼ିଓ, ଟିଭି; ପୁଂଜିପତି ଓ ନେତା ପରିଚାଳିତ ସମ୍ବାଦ ପତ୍ର; ଯାନ୍ତ୍ରିକ ଶିକ୍ଷା ପ୍ରଣାଳୀ; ସମସ୍ତେ ଷଡ଼ଯନ୍ତ୍ର କରୁଛନ୍ତି ମଣିଷର ଚିନ୍ତା କରିବାର ସ୍ୱାଧୀନତା ଟିକକ ନଷ୍ଟ କରିଦେବାପାଇଁ ।

ବହୁ ଦିନତଳେ ଜଣେ ପ୍ରସିଦ୍ଧ ଦାର୍ଶନିକ ବାର୍ଟ୍ରାଣ୍ଡ ରସେଲ୍‌ଙ୍କ ଗୋଟିଏ ଲେଖା ପଢ଼ିଥିଲି । ଓରୱେଲ୍ ଠିକ୍ 1984 ଓ Animal Farmର ଲେଖକଙ୍କ

ଅର୍‌ୱେଲ୍‌ଙ୍କ ଭଳି ଏକ ବହୁଗ୍ର ପ୍ରହରୀର ଭୟାନକ ଚିତ୍ର ଆଙ୍କିଛନ୍ତି । ଜଣେ ସ୍ୱେଚ୍ଛାଚାରୀର କବଳରେ କେଉଁ 2+2=5 ବୋଲି ଧାରଣା କେବଳ ପ୍ରଚାର ବଳରେ ଲୋକଙ୍କ ମନରେ ପୂରାଇ ଦିଆଯାଇପାରେ, ଏହା ସେ ଦର୍ଶାଇଛନ୍ତି ।

ପ୍ରତିବାଦ ଏବଂ ପ୍ରତିରୋଧରେ ହିଁ ଗଣତନ୍ତ୍ର ବଞ୍ଚିଆସିଛି ଯୁଗ ଯୁଗ ଧରି । ଏ ଶତାବ୍ଦୀରେ ଅତି ସୂକ୍ଷ୍ମ ଉପାୟରେ ମଣିଷର ପ୍ରତିବାଦ କରିବାର ଶକ୍ତିଟିକୁ ଧ୍ୱଂସ କରି ଦିଆଯାଉଛି । ଫଳରେ ମଣିଷ ହୋଇଉଠୁଛି ଗୋଷ୍ଠି ମାନବ, ରୋବଟ୍ ।

ମୋ ପଲ୍ଲୀର ଆକାଶରେ ଭେଳା ଭେଳା ମେଘ ଭାସି ଯାଉଥିବ । ଆମ୍ର, ବଂଶ କୁଂଜରେ ପବନର ମର୍ମର ପ୍ରସରି ଯାଉଥିବ ପ୍ରଭା ବସିଥିବ ଉଦାସୀ ଦୃଷ୍ଟି ନେଇ । ତାର ମନେ ପଡ଼ିଯାଉଥିବ ଅତୀତର କଥା ।

ସେ ଦିନ ଆକାଶ ଜ୍ୟୋତ୍ସ୍ନା ପିଚ୍‌କାରି ଢାଳୁଥିଲା, । ମୁଁ ପ୍ରଭାଙ୍କୁ ବୁଝାଉଥିଲି ରବିଠାକୁରଙ୍କର 'ଅଭିସାର' କବିତା ।

ସ୍ୱପ୍ନ ସୁନ୍ଦରୀ ଭଳି ପ୍ରଭାର ଆଖିରେ ଅଜଣା, ଅଶୁଣା ଦୁନିଆର ରହସ୍ୟମୟ ଝଲକ ଖେଳିଯାଉଥିଲା । 'ଅଭିସାର' କବିତା ପାଠଶେଷରେ ପ୍ରଭାର ଆଖିରେ ଦେଖାଗଲା ଦୁଇବିନ୍ଦୁ ଅଶ୍ରୁ ।

'ବାସବଦତ୍ତା' ଅପରୂପ ସୁନ୍ଦରୀ । ତାର ନୂପୁରର ତାଳେ ତାଳେ ବାଜିଉଠେ କାମଦେବଙ୍କ ଚିତ୍ତହରା ଛନ୍ଦ । ସମସ୍ତ ମଥୁରା ବାସୀଙ୍କ ମନକୁ ବାସବଦତ୍ତାର ରୂପ କରିଛି ନିଶାଗ୍ରସ୍ତ ।

ଶ୍ରାବଣର ଘନମେଘରେ ଅବଲୁପ୍ତ ନିଶୀଥର ତାରା । ଅଭିସାରିକା ଚାଲିଛି ବିପୁଳ ଉଲ୍ଲାସରେ ।

ଅଙ୍ଗେ ଆଁଚଲ ସୁନୀଳ ବରନ
ରୁନୁଝୁନୁ ରବେ ବାଜେ ଆଭରଣ ।'

ହଠାତ୍ ରୂପସୀର ଯାତ୍ରାହେଲା ସ୍ଥଗିତ । ସନ୍ୟାସୀଙ୍କ ପବିତ୍ର ଗାତ୍ରକୁ ସ୍ପର୍ଶ କରିଥିଲା ନର୍ତ୍ତକୀର ଶିରୀଷ କୋମଳ ପଦ ।

ପ୍ରଦୀପର ଆଲୋକରେ ଦୀପ୍ତହୋଇଉଠିଲା ସନ୍ୟାସୀଙ୍କର ନବୀନ ଗୌର କାନ୍ତି । ସୌମ୍ୟ ସହାସ ବିକଚ ନୟନ ତରୁଣଙ୍କର ଶୁଭ୍ରଲଲାଟରେ ଝଲମଲ ସ୍ନିଗ୍ଧ ଶାନ୍ତିର ଅଖଣ୍ଡ ରାଜତ୍ୱ ।

ବିମୁଗ୍ଧ ରମଣୀର ଥରକଣ୍ଠରୁ ସ୍ୱର ଭାସିଆସିଲା

'କ୍ଷମାକରେ ମୋରେ ସୁନ୍ଦର କିଶୋର
ଦୟାକରେ ଯଦି ଗୃହେ ଚଲେ ମୋର
ଏ ଧରଣୀତଳ କଠିନ କଠୋର, ଏନହେ ତୋମାର ଶଯ୍ୟା'

ସନ୍ୟାସୀଙ୍କର ଚକ୍ଷୁରେ ଅରୂପ ଜଗତର ତାପହୀନ ଆଲୋକ । ସ୍ନିଗ୍ଧ କଣ୍ଠରୁ ଅମୃତଭରା ବାଣୀ ଝରି ଆସିଲା ।

'ସମୟ ଯେଦିନ ହଇବେ ଆପନି ଯାଇବ ତୋମାର କୁଞ୍ଜେ' ସମୟ ଆସିବାକୁ ବିଳମ୍ବ ହେଲାନି । ଏକ ମୁକୁଳଝରା କୁହୁଅରା ଜୋଛନାମତ୍ତା ରଜନୀରେ ରୋଗିଣୀ ବାସବଦତ୍ତାର ବେଦନା-ପ୍ରକମ୍ପିତ ପ୍ରତ୍ୟଙ୍ଗଗୁଡ଼ିକ ଅସହ୍ୟ ହୋଇଉଠିଥିଲା । ପ୍ରମତ୍ତ ନାଗରମାନେ ବିଷକନ୍ୟା ଭାବି ନଗର ବାହାରେ ତାକୁ ଫୋପାଡ଼ି ଦେଇଥିଲେ ।

ଅଜ୍ଞାତ କୋମଳହସ୍ତର ଶୀତଳ ସ୍ପର୍ଶ ଆରାମ ଓ ଆଶ୍ୱାସର ପ୍ରଲେପ ମାଖିଦେଲା ବାସବଦତ୍ତାର ଅଙ୍ଗପ୍ରତ୍ୟଙ୍ଗରେ ତାର କ୍ଷୀଣକଣ୍ଠ ନୀରବତାକୁ ଅଶାନ୍ତ କରିଥିଲା ।

'କେ ଏସେଛ ତୁମି ଓଗୋ ଦୟାମୟ'?

ସମସ୍ତ ପାପତାପକୁ ହରଣ କରିପାରୁଥିବା ଉପଗୁପ୍ତଙ୍କ ଅଭୟବାଣୀ ବାସନ୍ତୀ ସନ୍ଧ୍ୟାକୁ ଚକିତ ଓ ବିହ୍ୱଳ କରିଥିଲା ।

'ଆଜି ରଜନୀତେ ହୟେଛେ ସମୟ, ଏସେଛି ବାସବଦତ୍ତା ।'

କଥାଟି ଶେଷକରି ମୁଁ ନୀରବଥିଲି । ପ୍ରଜ୍ଞା ବସି ରହିଥିଲା ପଥର ମୂର୍ତ୍ତିପରି । ପ୍ରଜ୍ଞା ଭଳି ଭାବପ୍ରବଣତା ଆଖିରୁ ସହଜରେ ଲୁହ ଝରିଯାଏ ।

ପ୍ରଭାଯଦି ପାରନ୍ତା ମତେ ଲକ୍ଷ୍ୟକରି ଆଜି କବିଙ୍କ ଭାଷାରେ ସେ [illegible] କହୁଥାନ୍ତା ।

'He is in his grave and oh !
The difference to me'.

ସେ ଆଜି ସମାଧି ଭିତରେ , କି ତଫାତ୍ ମୋ ଜୀବନ ପଥରେ ।

ଏବେବି ଜୀବନ ପାଇଁ ମୋର କୌଣସି ଅବଶୋଷ ନାହିଁ । ପୃଥିବୀ ପଥ ମୋତେ ଜନ୍ମଧାରଣ କରିବାପାଇଁ. କୁହାଯାଉ ମୁଁ ଏହି ଜୀବନକୁ ହିଁ' ଉପଭୋଗ କରନ୍ତୁ ।

ଦ୍ରୌପଦୀର ସାଥି ହିସାବରେ ମୋତେ ଯେଉଁ ମୂଲ୍ୟ ଦେବାକୁ ପଡ଼ିଲା, ତାହା ମୋର ଖାତିରେ ନାହିଁ । କର୍ଣ୍ଣଙ୍କ ଦୁନିଆରେ ଚରିତ୍ରର ଚରମ ତ୍ୟାଗର ଗାଥା ଅଶ୍ରୁତ ରହିଲେ ।

ଆଜି ସେନ୍ସର ମନେ ପଡ଼ୁଚନ୍ତି । ପ୍ରେମ, ବିଦ୍ରୋହ, ଜୀବନ ପାଇଁ ମମତା ପ୍ରକାଶିବାରେ ସମ୍ଭବତଃ ବିଶ୍ୱର ବହୁତ କମ୍ କବି ତାଙ୍କର ସମକକ୍ଷ ହୋଇପାରିବେ ।

I am content to live it all again
And yet again, if it be life to pitch,
Into the frog-shown of a blindman's ditch…

ମୁଁ ପ୍ରସ୍ତୁତ ଠିକ୍ ସେଭଳି ବଞ୍ଚିବା ପାଇଁ . ଥରେ ନୁହେଁ. ବହୁଥର,
ଅନ୍ଧାର ନଳାରେ , ବେଙ୍ଗ ଫୁଲର ଜୀବନ ମଧ୍ୟ କାମ୍ୟ ମୋର ।

ଅନ୍ଧର ନର୍ଦ୍ଦମାରେ ବେଙ୍ଗଫୁଲର ଜୀବନ ମଧ୍ୟ ଆଗ୍ରହରେ କଟାଇବାକୁ ମୋର ଅନିଚ୍ଛା ନାହିଁ ।

ଦେହରେ ମୋର ଆଉ ବଳ ନାହିଁ । ଜୀବନର ସକଳତା ଧୀରେ ଧୀରେ ନିଃଶେଷ ହୋଇ ଆସୁଚି । ମୁଁ କେବେ ଦ୍ରୌପଦୀ ଭଳି ଦୁର୍ଦ୍ଧର୍ଷ ଶକ୍ତିର ଅଧିକାରୀ ନଥିଲି । ଯାହା ବା ଦୈହିକ ଶକ୍ତି ଥିଲା, ଜେଲ୍‌ର ଅନ୍ଧାରୁଆ କୋଠରିରେ ତାହା ଧୀରେ ଧୀରେ କ୍ଷୟ ହୋଇଚନ୍ତି । କେବଳ ଗୋଟିଏ କାମନା ମୋତେ ଦିନରାତି ଅଶାନ୍ତ କରୁଚି । ମୋର ଏ ଲେଖା ଦେଶରେ କାହାରର ମୁକ୍ତ ପବନ ବାଜିବ ?

ବେଳେ ବେଳେ ଅନ୍ୟ ଏକ ସନ୍ଦେହ ମନକୁ ଘାରୁଚି ? ମୋ ଜୀବନୀର ପାଠକ ବିଶ୍ୱାସ କରିପାରିବେ ଦ୍ରୌପଦୀ ଭଳି ଏକ ଅନୁମାନଙ୍କୁ ଏ ଶତାବ୍ଦୀ ଜନ୍ମ ଦେଇଥିଲା ?

'ଆଃ ! ସତ୍ୟ ବି ବେଳେ ବେଳେ କଳ୍ପନାକୁ ବଳିଯାଇଥାଏ ।' ସାହିତ୍ୟ ସାଧକଙ୍କ ଏଇ ଉକ୍ତି ଯୁଗେ ଯୁଗେ ସ୍ମରଣୀୟ । ବହୁ ଶତାବ୍ଦୀପରେ ତାଙ୍କ ଜୀବନୀ ଯେତେବେଳେ ପାଠ କରାଯିବ, ସେତେବେଳେ ଲୋକେ ନିଶ୍ଚୟ ବିସ୍ମୟ ପ୍ରକାଶ କରିବେ । ଭାରତର ଭାଇସରୟ ଲର୍ଡ ମାଉଣ୍ଟବେଟନ୍‌ଙ୍କ ପ୍ରଶଂସା ଲୋକଙ୍କୁ ଅବଶ୍ୟ ଅଦ୍ଭୁତ ଜଣାଯିବ ।

ଏ ଅଦ୍ଭୁତ ଶକ୍ତି ବହନକରି ଚାଲିଥିଲା ସେହି ଦୁର୍ବଳ ଜରାଗ୍ରସ୍ତ ଶରୀରଟି । ସାଂପ୍ରଦାୟିକ ଦଙ୍ଗାରେ ବିଧ୍ୱସ୍ତ ବଙ୍ଗଳାରେ ଶାନ୍ତିର କମ୍ବଦସ୍ତ ବୁହାଇଦେବା ଶପଥନେଇ କଲିକତାରେ ଦେଖାଦେଇଥିଲେ ସେ । ଦିଲ୍ଲୀରେ ଯେତେବେଳେ କମାଣ ଗର୍ଜି ଉଠୁଥିଲା, ତିରଙ୍ଗା ପତାକା ଯେତେବେଳେ ଲାଲକିଲ୍ଲାକୁ ଗୌରବାନ୍ୱିତ କରୁଥିଲା; କଲିକତାର ଅଖ୍ୟାତ କୋଣରେ ଭାରତୀୟ ଜନତାର ମୁକୁଟହୀନ ସମ୍ରାଟ ଚକ୍ଷୁରେ ଟଳଟଳ କରୁଥିଲା ଦୁଇବିନ୍ଦୁ ବିଷାଦ ପୀଡ଼ିତ ଅଶ୍ରୁ ।

ସ୍ୱାଧୀନତା ପୂର୍ବରୁ ଦିଲ୍ଲୀର ଅଂଶିତ କୋଠରୀରେ ଯେତେବେଳେ କ୍ଷମତାର ରଙ୍ଗିନ୍ ସ୍ୱପ୍ନ କଇଳ ବଣ୍ଟାଯିବ ବିଚାର ଚାଲିଥିଲା ; ରକ୍ତର ଫୁଆର ଛୁଟୁଥିଲା ପଞ୍ଜାବ, ବିହାର ଓ ବଙ୍ଗଳାର ଶ୍ୟାମସ୍ନିଗ୍ଧ ଗ୍ରାମ ଓ ଧୂମ୍ରଲାଞ୍ଛିତ ସହରରେ । ସୁଦର୍ଶନ ଭାଇସରୟ ମାଉଣ୍ଟବେଟନ୍‌ଙ୍କ ମୁହଁର ରେଖା ସବୁ ଆସ୍ତେ ଆସ୍ତେ ଜଟିଳ ହୋଇ ଆସୁଥିଲା । ପଚାଶ ହଜାର ସୁଦକ୍ଷ ଅନୁଗତ ବ୍ରିଟିଶ୍ ସୈନ୍ୟଙ୍କ ବୁଟ୍‌ଧ୍ୱନି ଶୁଭୁଥିଲା ପଞ୍ଜାବର କୋଣ ଅନୁକୋଣରେ । ମାଉଣ୍ଟବେଟନ୍ ଆଶାୟୀଥିଲେ ସେମାନେ ରୋକିଦେଇପାରିବେ ଅସ୍ତ୍ର ଓ ରକ୍ତର ପ୍ରସୂତିଶାଳା ସାଂପ୍ରଦାୟିକ ଦଙ୍ଗାକୁ । ତେଣୁ ଯେତେବେଳେ ଦିଲ୍ଲୀର ଭାଇସ୍‌ରୟଙ୍କ ଲନ୍‌କୁ ସକରୁଣଭାବେ ଧଳାଚମଡ଼ା ସେନାପତି ସଦନରେ ଗର୍ଜି ଉଠୁଥିଲେ ବହୁ ବହୁ ''ଚାଷଲଭ ! ଚାଷଲଭ ରକ୍ଷାକର କପୋତ ଭଳି ଅବୋଧ ଶିଶୁମାନଙ୍କୁ ଓ ମୃଗଧାହରଣୀଭଳି ନିସ୍ପୃହ ନାରୀମାନଙ୍କୁ ! ବିଶ୍ୱ ମହାଯୁଦ୍ଧରେ ହିଟଲରର ଦାନ୍ତ ଖଟ୍ଟାଇ ଦେଇଥିବା ପଞ୍ଚାବନହଜାର ସୈନ୍ୟଙ୍କ ମୁଣ୍ଡର ଏ କଳଙ୍କଟିକା କଣ ସାରା ବଙ୍ଗୋପସାଗର ଧୋଇପାରିବ ?'

ଜଳସଜଳରକ୍ତ ବହନ କରୁଥିବା ବିଶ୍ୱ ମହାଯୁଦ୍ଧର ସାର୍ଥକ ସେନାପତି ମାଉଣ୍ଟବେଟନ୍‌ଙ୍କର ମୁଖରେ ବିଷଣ୍ଣତାର ଛାୟା ଗାଢ଼ ହୋଇଉଠିଥିଲା, 'ଦୁଇହଜାର ବର୍ଷ ! ଦୁଇହଜାର ବର୍ଷ ବିଶ୍ୱକୁ ଅପେକ୍ଷା କରିବାକୁ ପଡ଼ିଲା ଆଉ ଜଣେ ଖ୍ରୀଷ୍ଟଙ୍କପାଇଁ ! ପଦ୍ମାର ଆଶୀର୍ବାଦପ୍ରାପ୍ତ ଜଳସିକ୍ତ ଭୂମିରେ ଯେଉଁ

ଡ୍ରାଗନ୍ ମଣିଷଚଣିଆକୁ ଖାଇ ବୁଲୁଥିଲ, ତାକୁ ସେଣ୍ଟଜର୍ଜଙ୍କ ଭଳି ମୃତ୍ୟୁ ଚଟାଇପାରିଲ କେବଳ ଜଣେ ଲୋକ ସାଥୀ ନାହିଁ, ସହାୟ ନାହିଁ । ଅଣ୍ଟ ନ ଲୁଣ୍ଟ ଲୁଗାପିନ୍ଧିଥିବା ଜଣେ ଧଡ଼ିଆ ଲୋକ, ଚର୍ଚ୍ଚିଲ୍‌ଙ୍କ ରାଜ୍ୟର ଲଙ୍ଗଳା ଫକୀର, ଏତେବଡ଼ ସମ୍ରାଟ୍‌କୁ ଜବତ୍ କରିପାରିଲେ କେମିତି ?

ଆମେରିକା ଇଣ୍ଟିଡ଼ଭାବରେ ସୁପରମ୍ୟାନ । ଦକ୍ଷିଣ ଆଫ୍ରିକାର ନିର୍ଯ୍ୟାତନା ଯେଉଁଭଳି ସୁପରମ୍ୟାନ ଗାନ୍ଧୀଙ୍କୁ ଜନ୍ମ ଦେଇଥିଲା, ଡଲଲ୍ ଲୁଇସ ଓ ମେଡ୍‌ବର୍ଗଙ୍କ ହିପୋଥେସିସ ଠିକ୍ ସେହିଭଳି ଆମେରିକାର ଆତ୍ମାରେ ଉତ୍ପାତ ପ୍ରବେଶକରାଇ ପାରିଥିଲା ।

ସ୍ପୋର୍ଟସ୍ ଜଗତର ଉଜ୍ଜ୍ୱଳତାରକା ଆମେରିକା ଅସମ୍ଭବଭାବରେ ଗମ୍ଭୀର ହୋଇ ଉଠିଥିଲା । ଏଇ ଚରୁଣ୍ଟି ଯେ ଲୁଣଧାଡ଼ିରେ ଚାଲି ଏହା ସମ୍ଭବତଃ କଲେଜର ସମସ୍ତ ଛାତ୍ର ଉପଲବ୍ଧି କରି ସାରିଲେ । ବହୁ କୌତୁହଳ, ଜିଜ୍ଞାସା ଓ ସମ୍ଭ୍ରମବୋଧର କେନ୍ଦ୍ରସ୍ଥଳ ଆମେରିକା କୌଣସି ବାହାର ବିଷୟରେ ସଚେତନ ରହୁ ନଥିଲା ।

ଇତିହାସର ଅନ୍ଧାରୀ ଗଳିର ଅବଚେତନ ଭୂମିରେ ମିଥ୍ ଓ କିମ୍ବଦନ୍ତୀର ଅସଂଖ୍ୟ ଫୁଲ ଫୁଟି ଉଠେ । ମଣିଷମନର ଅଜ୍ଞାତ ଅନ୍ଧାରୀ ଦେଶର ସ୍ୱାକ୍ଷର ବହନ କରି ଏସବୁ ମିଥ୍ ଓ କିମ୍ବଦନ୍ତୀ ବହୁ ଧୂସର ମୁହୂର୍ତ୍ତରେ ସ୍ୱପ୍ନର ସବୁଜିମା ସୃଷ୍ଟି କରନ୍ତି । ସେ ଭଳି ଏକ କଳଙ୍କହୀନ ମିଥ୍ ଗଢ଼ିଉଠିଥିଲା ବୈଦିକ ଭାରତରେ ମୈତ୍ରେୟୀ ଓ ଯାଜ୍ଞବଲ୍କ୍ୟଙ୍କୁ କେନ୍ଦ୍ର କରି ।

ଭାରତର ଅନ୍ୟତମ ଜ୍ଞାନୀ ଋଷି ଯାଜ୍ଞବଲ୍କ୍ୟ । ଚକ୍ରବର୍ତ୍ତୀର ମସ୍ତକ ଯାର ଚରଣଧୂଳିକୁ ସ୍ୱାଗତକରେ, ସେ ସ୍ତରର ଅସନ୍ଦେହ ମହାନ୍ ସେ । ବହୁ ରାଜସଭାରେ ତର୍କର କୁହେଳିକାଭେଦକରି ସେ ଯେଉଁ ଜ୍ଞାନର ରଶ୍ମି ବିକୀରଣ କରିଚନ୍ତି ତାହା ସମଗ୍ର ଭାରତବର୍ଷକୁ ଚକିତ କରିଦେଇଛି ।

ଯାଜ୍ଞବଲ୍କ୍ୟ ଉଦ୍ୟତ ଜୀବନ ପୁସ୍ତକର 'ଗୃହସ୍ଥ' ଅଧ୍ୟାୟରେ ପରିସମାପ୍ତି ଆଣିବାପାଇଁ । ପରେ ପରେ ଆରମ୍ଭ ହୋଇଯିବ 'ଯତିବ୍ରତ' ଜୀବନର କଠୋର ତପଶ୍ଚର୍ଯ୍ୟା ।

ଯାଜ୍ଞବଲ୍କ୍ୟଙ୍କର ଅତି ଆଦରର ଧର୍ମପତ୍ନୀ ମୈତ୍ରେୟୀ । ଗୃହିଣୀ, ସଚୀବ, ପ୍ରିୟସଖୀ: ସବୁ କିଛି ମହର୍ଷିଙ୍କର ଥିଲେ ସେ ।

ବିଦାୟର ବେଳା ଆସନ୍ନ । ଅନ୍ତରରେ ମହର୍ଷି ପତ୍ନୀ ମୈତ୍ରେୟୀଙ୍କୁ ପ୍ରଶ୍ନକଲେ,'ମୁଁ ତମକୁ କ'ଣ ଦେଇ ସନ୍ତୁଷ୍ଟ କରିପାରେ ମୈତ୍ରେୟୀ ? ଧନ, ରତ୍ନ, ଇନ୍ଦ୍ରପୁରୀର ବିଭବ, କୌଣସିଟି ମୋର ଅଦେୟ ନୁହେଁ ।' ମୈତ୍ରେୟୀଙ୍କ ମଧୁରକଣ୍ଠରେ ଜାଗିଉଠିଲା ନଚିକେତୀୟ ପ୍ରଶ୍ନ, 'ଯାହା ମୋତେ ଅମୃତତ୍ୱ ଦେଇ ପାରିବନି, ତାକୁ ନେଇ ମୁଁ କ'ଣ କରିବି ?'

ନଚିକେତା ଓ ମୈତ୍ରେୟୀ ପରଂପରାର ଅଧିକାରୀ ଥିଲା ସ୍ମୀରିକା । ତାର ସ୍ୱଚ୍ଛବସ୍ତୁଳତା ଗୁଣରେ ସେ ନିର୍ଲିପ୍ତ ରହୁଥିଲା । ସମସ୍ତ କ୍ଷେତ୍ରରେ ପଦ୍ମପତ୍ରର ଜଳଭଳି ।

ଦୁଇଟି ବର୍ଷ ରେଭେନ୍‌ସାରେ କଟାଇଦେଲା ସ୍ମୀରିକା । ସହଜୟାଙ୍କୁ ରକ୍ଷା କରିବାକୁ ଯାଇ ମରଣମୁହଁରୁ ଫେରି ଆସିଥିଲା ସେ ।

ଛଗନ ତ୍ରିପାଠୀ ଓ ତାର ଦଳ କଲେଜ ନିର୍ବାଚନରେ ନିୟୁକ୍ତ ହୋଇଥିଲେ । ସେମାନେ ଜାଣିଶୁଣି ସ୍ମୀରିକାଠୁ ନିଜକୁ ଦୂରେଇ ରଖିଥିଲେ । ନିଜର ଗମ୍ଭୀର ପ୍ରକୃତିଯୋଗୁଁ ସ୍ମୀରିକା ସାଧାରଣ ଛାତ୍ରମାନଙ୍କଠାରୁ ଦୂରରେ ରହୁଥିଲା ।

ବି.ଏ. ପରୀକ୍ଷା ପଡ଼ିଯାଇଥିଲା । ଇଂରାଜୀ ଅନର୍ସର ଆଉରି ଗୋଟିଏ ଦୁଇଟି ପେପର୍ ଥିଲା । ହଠାତ୍ ଝଡ଼ଭଳି ପଶିଆସି ସ୍ମୀରିକା କହିଲା, 'ଶର୍ମା, ମୁଁ ଚାଲି ଯାଉଛି ।' ବିସ୍ମିତ ହୋଇଥିଲି, କିନ୍ତୁ କିଛି କହି ନଥିଲି । ସ୍ମୀରିକା ଥିଲା ଏକ ନିସ୍ତବ୍ଧ ପୋଖରୀ, ଯାର ତଳ ଦେଖି ଦେଖାଯାଏନା । ମାରକରେ ଶିର ସଞ୍ଚାଳନ କରି ଅଧ୍ୟୟନରେ ବ୍ୟସ୍ତ ରହିଥିଲି କାରଣ ତା ପରଦିନ ମୋର ପରୀକ୍ଷା ଥିଲା ।

ପରଦିନ ବିଦାୟ ମୁହୂର୍ତ୍ତରେ ଭାବପ୍ରବଣ ହେବାର ବିଶେଷ ଅବକାଶ ପାଇନଥିଲି । ପରୀକ୍ଷାର ଚିନ୍ତା ମୋ ମନକୁ ପୂର୍ଣ୍ଣଭାବରେ ଗ୍ରାସ କରିଥିଲା ।

ପରୀକ୍ଷାଦେଇ ଘରକୁ ଚାଲିଯାଇଥିଲି । ପରୀକ୍ଷାରେ ଆଶାତୀତ ଭାବରେ ଭଲ କରିଥିଲି ଏବଂ ଏକରକମ ସୁନିଶ୍ଚିତ ଥିଲି ଯେ ସବୁ ବିଷୟରେ ମୁଁ ନିଶ୍ଚୟ ବିଶ୍ୱବିଦ୍ୟାଳୟର ପ୍ରଥମ ସ୍ଥାନ ନେବି ।

ଗାଁରେ ମୋତେ ଆକର୍ଷିତ କଲଭଳି କୌଣସି କାର୍ଯ୍ୟକ୍ରମ ନଥିଲା । ଗ୍ରୀଷ୍ମର ଅଳସ ଅପରାହ୍ଣ ଗୁଡ଼ିକ ଅସାଧାରଣ ଭାବରେ ଲମ୍ବା ଜଣାଯାଉଥିଲା । ଏଣୁ ଦେଶୀ ମ୍ୟାଗାଜିନ୍ ଓ ଉପନ୍ୟାସ ପଢ଼ି ମୁଁ ସମୟ କଟାଉଥିଲି ।

ସେ ଦିନ ସମାଜ ପଢ଼ି ଚମକି ପଡ଼ିଥିଲି । କୋରାପୁଟରେ ଆଦିବାସୀ-ମାନଙ୍କ ତରଫରୁ ଜନଆନ୍ଦୋଳନ ଆରମ୍ଭ ହୋଇଯାଇଥିଲା ଏବଂ ଆନ୍ଦୋଳନର ଅଗ୍ରଭାଗରେ ଥିବା ତରୁଣ କ୍ରମୀକାକୁ ପୋଲିସ୍ ଗିରଫ କରିଥିଲା ।

ଶୁଣିଥିଲି କୋରାପୁଟ ଶୋଷଣର ଚରାଭୂଇଁ । ଏକଦା କେବଳ ଦେହର ଲୁଗାକୁ ସମ୍ବଳ କରି କୋରାପୁଟକୁ ଆସିଥିଲେ ଯେଉଁ ସାହୁକାରମାନେ, ସେମାନେ ଗୋଟିଏ ଦୁଇଟି ପୁରୁଷରେ ହୋଇ ଉଠିଥିଲେ କୋଟିପତି ।

ବୈଶାଖର ଖରା ଓ ଶ୍ରାବଣର ଧାରକୁ ଖାତିର ନକରି ବଣର ବାଘଭାଲୁଙ୍କସହ ହାତାହାତି ହୋଇ ଯେଉଁ ଆଦିବାସୀ ଅକ୍ଳାନ୍ତ ପରିଶ୍ରମ କରି ଫସଲ ଉପୁଜାଉଥିଲା, ତାକୁ ଶାଗମାନ ମୂଲ୍ୟରେ ଅପହରି ନେଉଥିଲେ ସାହୁକାର ଓ ସୋସାଇଟି-ମାନେ ।

ଆଦିବାସୀକୁ ଶୋଷଣରୁ ରକ୍ଷାକରିବାପାଇଁ ଯେଉଁ ସୋସାଇଟିଗୁଡ଼ିକ ଗଢାଯାଇଥିଲା ସେଗୁଡ଼ିକ ଦୁର୍ନୀତିର ଗୋଟିଏ ଗୋଟିଏ ଦୁର୍ଗ ହୋଇ ପଡ଼ିଥିଲା । ସ୍ଥାନ ପରିଷଦ 'ଯୋଗୁଁ ଉପଜି ମୁଷ୍ଟିମେୟ ଆଦିବାସୀନେତା ରାଜନୈତିକ ଅଙ୍ଗନକୁ ଛୁଟିକି ପଡ଼ିଥିଲେ, ସେମାନଙ୍କ ମଧ୍ୟରୁ ଅନେକେ ସାହୁକାରମାନଙ୍କ ସହ ହାତ ମିଶାଇ ନିଜକୁ ଶ୍ରେଣୀଚ୍ୟୁତ କରାଇ ସାରିଥିଲେ ।

ଦୁର୍ଦମ ତେଜର ଅଧିକାରୀ କ୍ରମୀକା କଟକ, ଭୁବନେଶ୍ୱରରେ ଅନ୍ୟାୟର .ବଡ଼ବଡ଼ରାକ୍ଷାସକୁ ସାମନା କରିଥିଲା, ଓ ତାର ଜଙ୍ଗଲି ରକ୍ତକୁ ରାଜପଥରେ ଢ଼ାଳି ଦେଇଥିଲା । ଗମ୍ଭୀର ଭାବରେ ସେସବୁ ସମସ୍ୟା ଚିନ୍ତା କରିଥିଲା ଓ ଏକ ସିଦ୍ଧାନ୍ତରେ ମଧ୍ୟ ଉପନୀତ ହୋଇ ସାରିଥିଲା ।

ଆଦିବାସୀ ଆନ୍ଦୋଳନର ସୂତ୍ରପାତ ପ୍ରଥମେ କାଶୀପୁରରେ ହୋଇଥିଲା । ଚରମ ଦାରିଦ୍ର୍ୟ ଓ ଶୋଷଣର ନିଡ଼ାପ୍ରାଙ୍ଗଣ କାଶୀପୁରରେ କ୍ରମୀକା ପ୍ରଥମେ ତାର କାର୍ଯ୍ୟ ଆରମ୍ଭ କରି ଦେଇଥିଲା ।

ଶିକ୍ଷା ଫଳପାଇଁ ଅପେକ୍ଷାରେ ଗାଁରେ 'ପ୍ରଚଣ୍ଡ ସୂର୍ଯ୍ୟ ପ୍ରଦର୍ଶୀୟ ଚନ୍ଦ୍ରମା' ନଡାର ଅନ୍ତରାଳରେ କଳ୍ପନାରେ ମୁଁ ସ୍ୱପ୍ନରେ ସ୍ୱର୍ଗ ଗଢ଼ ନଥିଲି ଯେ ଆଦିବାସୀ ସନ୍ତାନ ତରୁଣ କୁମାରିକାମାନଙ୍କ ମୋର ଭାଗ୍ୟଦେବତା ଭବିଷ୍ୟତର ଅନ୍ଧକାରରେ ବନ୍ଦୀ ହୋଇଯିବ । ଅନ୍ୟାନ୍ୟ ଅସଂଖ୍ୟ ବୃଦ୍ଧିମାନ ପୁରୁଷଙ୍କ ଭଳି ମୁଁ ମଧ୍ୟ ସ୍ୱପ୍ନ ଦେଖୁଥିଲି ଏକ ସୁନ୍ଦର ବଙ୍ଗଳା ଓ ଅଗାଧ ସମ୍ପତ୍ତିର । ଗାଁରେ ସମସ୍ତେ ସ୍ଥିରକରି ଧରିନେଇଥିଲେ ଯେ ମୁଁ ନିଶ୍ଚୟ ଆଇ·ଏ·ଏସ୍· ପାଇବି ।

କଲ୍ୟାଣନଗରରେ କୁମାରିକା ଯେତେବେଳେ ମୋର ଅନ୍ତରଙ୍ଗ ବନ୍ଧୁ ହୋଇ ଉଠିଲା ସେ ତାର ଆଦ୍ୟବସନ୍ତ ଜୀବନର ଅଧ୍ୟାୟ ଗୁଡିକ ମୋ ଆଗରେ ଖୋଲି ଦେଇଥିଲା ।

କୋରାପୁଟ ଜିଲ୍ଲାର କାଶୀପୁର ଏକଦା ଥିଲା ଲବଣମ୍ଭାର ଦେଶ । ଦୁର୍ଗମ ପ୍ରଚଣ୍ଡ ଦୂରଦେଶ କାଶୀପୁରର ପ୍ରାକୃତିକ ଦୃଶ୍ୟଅତି ଅନନ୍ୟ ନୈସର୍ଗିକ । ଅସଂଖ୍ୟ ପାହାଡ଼, ଚିରସ୍ରୋତା କଳନାଦିନୀ ଝରଣା, ଶୀତ ପ୍ରଧାନ ଜଳବାୟୁ କାଶୀପୁରକୁ ପ୍ରାଣପାରମ୍ପର୍ଯ୍ୟ ଓ ଉଦ୍ଦାମ ଉଲ୍ଲାସର ରାଜ୍ୟ କରିଥିଲା । ଦୁଧ, ଦହି, ଛେନା, ବନ୍ୟଜନ୍ତୁଙ୍କ ମାଂସ ସବୁ କିଛି କାଶୀପୁର ବାସୀଙ୍କ ପକ୍ଷରେ ସୁଲଭଥିଲା ।

କାଶୀପୁର ବର୍ଷାର ଏକ ଅଦ୍ଭୁତ ସ୍ୱର୍ଗଥିଲା । କାଳିଦାସଙ୍କର ଏହି 'ମେଘମାଶ୍ଲିଷ୍ଟ ସାନୁଂ' ରହସ୍ୟରେ ବର୍ଷା ଆସୁଥିଲା ଠିକ୍ ଆଷାଢ଼ର ପ୍ରଥମ ଦିବସରେ, ସବୁଜ ପାହାଡ଼ର ଶୀର୍ଷଦେଶରେ ପୁଞ୍ଜା ପୁଞ୍ଜା ମେଘ ଭାସି ବୁଲୁଥିଲେ । ଆଜ ସପ୍ତାହ ସପ୍ତାହଧରି ବର୍ଷାର ରୁମ୍‌ଝୁମ୍ ନାଚ ଦେଖାଯାଉ ନଥିଲା । ପ୍ରେମାଧୀର ଯକ୍ଷ ଅବଶ୍ୟ ମେଘକୁ ଅନୁରୋଧ କରିଥିଲା, 'ସଦ୍ୟ : ସୀରୋତ୍କଷଣ ସୁରଭି କ୍ଷେତ୍ରମାରୁହ୍ୟ ମାଲଂ, କିଞ୍ଚିତ୍ ପଶ୍ଚାତ୍ ବ୍ରଜ ଲଘୁଗତି ଭୂୟ ଏବୋତ୍ତରେଣ' କିନ୍ତୁ ମେଘ କାଶୀପୁରର ସେହି ମାଳଭୂମିକୁ ଆବେଦନ କଲାପରେ ଆଜ ସେଠାକାର ସଦ୍ୟ କର୍ଷିତ କ୍ଷେତ୍ରର ସୁରଭିର ଲୋଭ ତ୍ୟାଗକରିବାକୁ ଅନିଚ୍ଛୁକ ଥିଲା ।

କାଶୀପୁରର ଆଦିବାସୀଙ୍କୁ ଝଡ଼ିଆ କୁହାଯାଉଥିଲା ଓ ସେଠାକାର ହରିଜନଙ୍କ ମଧ୍ୟରେ ଡମ୍ବଶ୍ରେଣୀ ସଂଖ୍ୟାଧିକ ଥିଲେ ।

ଧୀରେ ଧୀରେ କାଶୀପୁର ଆକାଶରେ ସଙ୍କଟନାଶୀ ଝଡ଼ର ପଦଧ୍ୱନି ଶ୍ରବଣଗୋଚର ହୋଇଉଠିଲା । ଭାରତର ଅନ୍ୟ ସବୁଠାରେ ଯେମିତି ଗ୍ରାମର ଅର୍ଥନୀତିକୁ ବାଣିଜ୍ୟପୁଞ୍ଜିର ପାହାଡ଼ ସ୍ଫୀତ ହୋଇ ଉଠିଥିଲା' ସେହିଭଳି କାଶୀପୁରର ଅଞ୍ଚଳକୁ ନେଇ ରାୟଗଡ଼ ସହରର ମୁଷ୍ଟିମେୟ ବ୍ୟବସାୟୀ ପରିବାର ସମୃଦ୍ଧିର ଶୀର୍ଷ ଶିଖରରେ ପହଞ୍ଚ ଯାଇଥିଲେ ।

ଜଙ୍ଗଲ ଠିକାଦାରର ଶ୍ୟେନଦୃଷ୍ଟିରେ ପଡ଼ି କାଶୀପୁରର ବିପୁଳ ଜଙ୍ଗଲ ସମ୍ପଦ ଅନ୍ତର୍ଦ୍ଧାନ ହୋଇଯାଇଥିଲା । ଚିରସ୍ରୋତା ଝରଣାଗୁଡ଼ିକର କଳେବର ଅସ୍ୱାଭାବିକ ଭାବରେ ସଙ୍କୁଚିତ ହୋଇଯାଇଥିଲା ।

କାଶୀପୁର ଅଞ୍ଚଳରେ ସମତଳଭୂମିର ପରିମାଣ ଯଥେଷ୍ଟ କମ୍ । କାଶୀପୁରର ଆଦିବାସୀ ମୁଖ୍ୟତଃ ଜଙ୍ଗଲର କୃପା ଉପରେ ନିର୍ଭର କରି ଜୀବନଧାରଣ କରୁଥିଲେ ।

ସଭ୍ୟସମାଜର ଲୁବ୍ଧତା ମେଣ୍ଟାଇବାପାଇଁ ଜଙ୍ଗଲ ସମ୍ପଦର ଅବାଧ ଲୁଣ୍ଠନ ଓ ଢାଲୁଜମିର ବେପରୁଆ କର୍ଷଣ ଅତି ସମୃଦ୍ଧ ଉପର ମାଟିକୁ ଅମାପତି କ୍ଷୟ କରି ଚାଲିଲା । ସାହୁକାର ଓ ବ୍ୟବସାୟୀଙ୍କ କାରସାଦି ଫଳରେ ସରଳ ଆଦିବାସୀର ସାରାବର୍ଷର ପରିଶ୍ରମର ଫଳ, ଶାଗ, ମାଛ ମୂଲ୍ୟରେ ବିକ୍ରି ହୋଇ ଯାଉଥିଲା । ଏପରିକି ଆଦିବାସୀଙ୍କ ଉନ୍ନୟନପାଇଁ ଗଢ଼ାହୋଇଥିବା ସମବାୟ ସମିତି ଗୁଡ଼ିକ ମଧ୍ୟ ଏହି ଶୋଷଣରେ ଅଂଶୀଦାର ହୋଇ ପଡ଼ିଲେ । ଫଳରେ କୋରାପୁଟ ଭଳି ପଛୁଆ ଜିଲ୍ଲାରେ ମଧ୍ୟ କାଶୀପୁର ସବୁଠାରୁ ଶୋଷିତ ଅଞ୍ଚଳ ହେବାର ଅଖ୍ୟାତି ଅର୍ଜନ କଲା ।

ସ୍ୱାମୀଛଡ଼ା ବି.ଏ ପରୀକ୍ଷା ପରେ କୋରାପୁଟର ଭିତର ଅଞ୍ଚଳରେ ଭ୍ରମଣ କରୁକରୁ କାଶୀପୁରରେ ପହଞ୍ଚିଥିଲା । କାଶୀପୁରର ଚରମ ଦାରିଦ୍ର୍ୟ ତାଙ୍କୁ ଅଥୟ କରିଦେଲା । କାଶୀପୁରରେ ସେ ଏଭଳି ଆଦିବାସୀ ରମଣୀଙ୍କୁ ଦେଖିଲା । ଯେଉଁମାନେ ଲଜ୍ଜା ନିବାରଣପାଇଁ ନିଜ ଦେହ ଛିଣ୍ଡା ଅଖାରେ ଆବୃତ କରିଥିଲେ । ସେଠାରେ ସେ ଶୁଣିଲେ କିଭଳି ଝିଅପୁଅଙ୍କୁ ବନ୍ଧକରଖି କେତେକ ଲୋକେ ରାୟଗଡ଼ ଯିବାର ପାଥେୟ ଯୋଗାଡ଼ କରିଥିଲେ ।

କାଶୀପୁର ଅଞ୍ଚଳର ଅଗମ୍ୟ ଗାଁ ଗୁଡ଼ିକ ମଧ୍ୟ ସ୍ୱାମୀଛଡ଼ାର ପଦଧ୍ୱନିରେ ସଚକିତ ହୋଇ ଉଠିଲେ । ଜଙ୍ଗଲର କାଠକଟା ବନ୍ଦ କରିବାପାଇଁ ଏବଂ

ଆତତାୟୀ, ହତ୍ୟାକାରୀ ଉତ୍ସାହିତ ଅଛନ୍ତି, କେନ୍ଦୁ ପ୍ରଭୃତି ଦ୍ରବ୍ୟର ଉପଯୁକ୍ତ ମୂଲ୍ୟପାଇବାପାଇଁ ସ୍ୱାମୀରଜା ଏକ ଆନ୍ଦୋଳନର ଖସଡ଼ା ତିଆରିକଲା ।

ଧୀରେ ଧୀରେ କାଶୀପୁରର ଜନଭୂମି ଏକ ନୂତନ ତାଣ୍ଡବେ ସଚକିତ ହୋଇଉଠିଲା । ସାହୁକାର, ପୋଲିସ୍, ଆଦିବାସୀ ନେତା; ସମସ୍ତେ ଏହି ନୂତନ ଜାଗରଣର ଔଜ୍ଜ୍ୱଲ୍ୟକୁ ସହ୍ୟ କରିପାରୁ ନଥିଲେ । ତେଣୁ ଦିନେ ଆଦିବାସୀଙ୍କୁ ନେଇ କାଶୀପୁରରେ ଶୋଭାଯାତ୍ରା କରୁଥିବାବେଳେ ସ୍ୱାମୀରଜାକୁ ପୋଲିସ୍ ଗିରଫ୍ କଲେ । ସ୍ୱାମୀରଜା ବିରୁଦ୍ଧରେ ଅଭିଯୋଗଥିଲା ସେ ଅସନ୍ତୁଷ୍ଟ ଆଦିବାସୀଙ୍କୁ ନେଇ ଏକ ସଶସ୍ତ୍ର ବିପ୍ଳବର ସୂତ୍ରପାତ କରୁଛି ।

ହାତ ମୋର ଅବଶ ହୋଇଆସୁଛି । ମନେ ହେଉଛି ଜୀବନ ଯାତ୍ରା ପଥର ଅନ୍ତିମଖଣ୍ଡ ଆଉ ବେଶୀ ଦୂରରେ ନାହିଁ । ରବର୍ଟ ଫ୍ରଷ୍ଟଙ୍କ ଭାଷାରେ ମୋତେ କହିବାକୁ ଇଚ୍ଛା ହେଉଛି ।

The woods are lovely, dark and deep,
But I have promises to keep,
And miles to go before I sleep.

ଜଙ୍ଗଲ ସୁନ୍ଦର, ତହିଁ ଗଭୀର ଅନ୍ଧାର
କିନ୍ତୁ ଜବାବ୍ ରହିଛି ମୋର ବହୁତ କାର୍ଯ୍ୟର ।
ଶୋଇବା ପୂର୍ବରୁ ମତେ
ଅତିକ୍ରମିବାକୁ ହେବ ପଥ ବହୁ ଦୂର ।

ହେ ଶ୍ୟାମସମାନ ମୃତ୍ୟୁ । ତମେ ଅପେକ୍ଷା କର । ମୋର ଲେଖା ମୁଁ ପୂର୍ଣ୍ଣ କରିସାରେ । ତାପରେ ତମେ ଆସିବ ମୋତେ ଚରମ ବିଶ୍ରାନ୍ତିର ମାଦକ ପ୍ରଲୋଭନ ଦେଖାଇ । ରବୀନ୍ଦ୍ରଙ୍କ ଭଳି ମୁଁ 'ମରିତେ ଚାହିନା ଆମି ଏ ସୁନ୍ଦର ଭୁବନେ' କହିବାକୁ ଚାହେଁନା । ମୋ ପକ୍ଷରେ ଏ ଭୁବନ ବର୍ତ୍ତମାନ ସୁନ୍ଦର ନୁହେଁ କି ଆକର୍ଷଣୀୟ ନୁହେଁ ।

ଗୋଟିଏ କ୍ଷୁଦ୍ର ନିଦ୍ରା, ଏବଂ ତାପରେ ଚିରନ୍ତନ ଜାଗରଣ । ଆଃ, ମୁଁ ଯଦି ଡନ୍‌ଙ୍କଭଳି ଏ ସମ୍ପର୍କରେ ନିଶ୍ଚିନ୍ତ ହୋଇ ପାରନ୍ତି । ମୃତ୍ୟୁ ସେ

ପାଖରେ କ'ଣ ଅନ୍ୟ ଏକ ଜଗତ ରହିଛି ? ସେ ଜଗତରେ କ'ଣ ଜଣେ ନିଜର ମୃତ ବନ୍ଧୁମାନଙ୍କୁ ଭେଟିପାରେ ? ମୁଁ ଯଦି ହ୍ୱମୀରକାକୁ ଭେଟିପାରନ୍ତି ? ପାରନ୍ତେ, 'ହ୍ୱମୀରକା' ଏ ଶୌର୍ଯ୍ୟ, ଏ ପ୍ରଚଣ୍ଡ ଧର୍ମଶକ୍ତି ତମେ ପାଇଲ

କେମିତି ସମ୍ଭବ ହେଲା ଏକଥା ? କୋରପୃଷ୍ଟର ଅଧିବାସୀ ସନ୍ତାନ କେମିତି ହୋଇପାରିଲ ସ୍ୱାଧୀନୋତ୍ତର ଭାରତର ଶ୍ରେଷ୍ଠ ସନ୍ତାନ ?

ଗାନ୍ଧୀ: ତୁମେ ମରିଯାଇ ଠିକ୍ କରିଛ । ତମ ଶିଷ୍ୟମାନଙ୍କୁ ତମ ନାମ ଉଚ୍ଚାରଣ କଲେ ଶାନ୍ତି ମିଳୁନି । କିନ୍ତୁ ତମ ଆଦର୍ଶକୁ ସେମାନେ ଦଶଫୁଟ ଲମ୍ବା ବାଉଁଶରେ ମଧ୍ୟ ସ୍ପର୍ଶ କରିବାକୁ କୁଣ୍ଠିତ ।

ମଣିଷ ନିଜର ସ୍ୱାର୍ଥକୁ ରକ୍ଷାକରିବାପାଇଁ ଚମତ୍କାର ଉପାୟଟିଏ ଉଦ୍ଭାବନ କରିଛି । ଧରଅ, ଧରଅ, ମଣିଷକୁ ଦେବତା କରିଦିଅ, ତାହେଲେ ଆଉ ତାର ଉପଦେଶ ମାନିବାର ଝାମେଲା ରହିବନି ।

ସେଣ୍ଟଜୋନ୍ ନାଟକ ବର୍ଣ୍ଣାଡ୍‌ଶଙ୍କର ଏକ ପ୍ରସିଦ୍ଧ ନାଟକ । ସେ ନାଟକ-ଟିର ଶେଷଦୃଶ୍ୟରେ ଠିକ୍ ଏଇ ପ୍ରଶ୍ନର ଅବତାରଣା କରିଛନ୍ତି ବର୍ଣ୍ଣାଡ୍‌ଶ୍ ।

କଳା ଓ ସାଂସ୍କୃତିକ ଜନ୍ମଦାତ୍ରୀ ଫ୍ରାନ୍ସ ସବୁକିଛି ହରାଇଛି । ତାର ଆତ୍ମସମ୍ମାନ ଇଂଲିଶ ଚ୍ୟାନେଲ୍‌ରେ ବୁଡ଼ିଯାଇଛି । ଇଂଲଣ୍ଡର ଦୁର୍ଦ୍ଧର୍ଷ ସେନାପତି ଟାଲ୍‌ବଟ୍ ଗୋଟିଏ ପରେ ଗୋଟିଏ ସହରରେ ୟୁନିଅନ୍ ଜାକ୍ ପୋତିଚନ୍ତି ।

ପତନଶୀଳ ସମ୍ଭ୍ରାନ୍ତ ସମାଜର ମୁଖା ଖୋଲିଯାଇଛି । ବିଳାସପ୍ରେମିକ ନାଇଟ୍‌ଗୋଷ୍ଠି ଫ୍ରାନ୍ସକୁ ପତନରମୁଖରୁ ରକ୍ଷାକରି ପାରିନାହାନ୍ତି । ସେମାନେ ଅପେକ୍ଷା କରି ରହିଛନ୍ତି ସେଇଦୁର୍ଦ୍ଦିନ ପାଇଁ, ଯେଉଁ ଦିନ ସମଗ୍ର ଫ୍ରାନ୍ସ ଇଂଲଣ୍ଡର ହସ୍ତ ତ୍ରୁପ୍ସା ତଳକୁ ଖସିଯିବ । ଆଗେଇ ଆସିଲା କୃଷକ ବାଳିକା ଜୋନ୍ । ଈଶ୍ୱରଙ୍କ ପ୍ରେରିତ ଦୃଢ଼ମନସ୍କା ଓ ଉଚ୍ଛଳତା ନେଇ ସମଗ୍ର ଫ୍ରାନ୍ସକୁ ଜାଗ୍ରତ କରିଲା ସେ ।

ଜନ୍ମନେଇଛି ଏକ ନୂତନ ଶକ୍ତି 'ଜାତୀୟବାଦ' । ଏଇ ପ୍ରଚଣ୍ଡ ନାରୀଦୈତ୍ୟର ଆକ୍ରମଣରେ ହତଚକିତ ହୋଇଉଠିଛି ବ୍ରିଟିଶ ବାହିନୀ । ଫ୍ରାନ୍ସର ଯୁବରାଜ—ଡ଼ଫିନଙ୍କ ହାତରେ ରାଜଦଣ୍ଡ ଧରାଇ ଦେଇଛି ଜୋନ୍ ।

ପାଲେଷ୍ଟାଇନ୍‌ର ମରୁ ଅଞ୍ଚଳରେ ଏକଦା ଜଳି ଉଠିଥିବା ଆଲୋକଟିକୁ ଯେଉଁମାନେ ମାତ୍ର ତିରିଶିଟି ମୁଦ୍ରା ବଦଳରେ ଅନ୍ଧାର ହାତରେ ଅର୍ପଣ କରିଥିଲେ । ଅପରାଧୀ ଜୁଦା, ଠିକ୍ ସେମାନେ ଫ୍ରାନ୍ସର ତ୍ରାଣକର୍ତ୍ରୀ ମାତ୍ର କେତେ ସ୍ୱର୍ଣ୍ଣମୁଦ୍ରା ବଦଳରେ ଅର୍ପିତ ହୋଇଥିଲେ ବ୍ରିଟିଶ୍ ସୈନ୍ୟଙ୍କ ହାତରେ ।

ତାପରେ ଆରମ୍ଭ ହେଲା ଏକ ପ୍ରହସନ । ଧର୍ମନାମରେ, ନ୍ୟାୟ ନାମରେ ସୈତାନର ଚରମ ସମର୍ଥନ । ଶତାବ୍ଦୀର ସର୍ବଶ୍ରେଷ୍ଠ ନିଷ୍କଳୁଷ ଆତ୍ମାଟିକୁ ଡାହାଣୀ ଆଖ୍ୟାଦେଇ ଫୋପାଡ଼ି ଦିଆଗଲା ଅଗ୍ନିସ୍ତୂପ-ଉପରେ ।

ଗୋଟିଏ ମୁହୂର୍ତ୍ତ ପାଇଁ ସନ୍ଦେହର ସାମାନ୍ୟ ସ୍ପର୍ଶ ଲାଗିଥିଲା ଏହି ଅସାଧାରଣ ବାଳିକାଟିର ମନରେ । ପୀଡ଼ିତ ଏକ ମହାନ୍ ଆତ୍ମା ପଚାରିଥିଲା, 'ଭଗବାନ ! ମୋତେ ତୁମେ ଛାଡ଼ି ଚାଲିଗଲ କାହିଁକି ?' ତା ପରେ ପରେ ବିଶ୍ୱାସର ସ୍ୱର୍ଗୀୟ ଦୀପ୍ତିରେ ଉଜଳି ଉଠିଥିଲା ମରଣମୁଖୀ ଯାତ୍ରୀର ଚରମ ମୁଖ ।

ବ୍ରିଟିଶ ଅଧିକାରୀଙ୍କ ଶେଷ ଘଣ୍ଟି ବାଜି ଉଠିଥିଲା ସେହି ଅମଳିନ ଆତ୍ମାର ପ୍ରୟାଣ ମୁହୂର୍ତ୍ତରେ । ଫ୍ରାନ୍ସର ଆକାଶ ପାଇଥିଲା ଏକ ନୂତନ ରଙ୍ଗ । ଏକ ଅଜେୟ ଶକ୍ତି ଲମ୍ଫଦେଇ ଉଠିଥିଲା ସାମନ୍ତବାଦର କବର ଫଟାଇ ।

ନିର୍ମେଘ ଆକାଶଆଡ଼େ ଚାହିଁ ଫ୍ରାନ୍ସର ସାଧାରଣ ଲୋକ ସ୍ମରଣ କରିଥିଲେ ଫ୍ରାନ୍ସ ଜାତୀୟତାବାଦର ଜନ୍ମଦାତ୍ରୀ କୃଷକ ବାଳିକା ଜୋନ୍‌କୁ । ସେତେବେଳେ ପରାଜିତ, କ୍ଳାନ୍ତ ଇଂରେଜ ସୈନିକମାନଙ୍କର ଭେଳା ଛୁଟିଥିଲା ଇଂଲିଶ ଚ୍ୟାନେଲ ଉପରେ ।

କ୍ୟାଥଲିକ୍ ସମାଜ ତାର ସର୍ବଶ୍ରେଷ୍ଠ ସମ୍ମାନରେ ଭୂଷିତ କଲା ଏକଦା ଡାହାଣୀ ଆଖ୍ୟା ପାଇ ଅଗ୍ନିକୁଣ୍ଡରେ ପ୍ରାଣ ବିସର୍ଜନ କରିଥିବା କୃଷକ ବାଳିକାକୁ । ଜୋନ୍ ହୋଇଗଲେ ସେଣ୍ଟ୍ ଜୋନ୍ । ଫ୍ରାନ୍ସ ବିଭିନ୍ନ ନଗରରେ ଧରଜମାନ କଲା ମୁକ୍ତିଦାତ୍ରୀ ଜୋନର ସୁନ୍ଦର ବ୍ରୋଞ୍ଜ ପ୍ରତିମୂର୍ତ୍ତି ଗୁଡ଼ିକ ।

କଥାଟି ଏଇଠି ଶେଷ ହୋଇ ଯାଇଛି । ଜୀବନ ଯାହାକୁ ସାମାନ୍ୟତମ ସୁଖ ଦେଇ ପାରିନ, ମୃତ୍ୟୁ ତାକୁ ମହାନ୍ କରି ଦେଇଛି । କିନ୍ତୁ ନାଟ୍ୟକାରଙ୍କ କଳ୍ପନାମନ ଏତିକରେ ସନ୍ତୁଷ୍ଟ ହୋଇପାରିନ ।

ଫ୍ରାନ୍ସର ଏକ ମନଚାଟେଫ୍ଟୀ ରାତ୍ରୀ ! ଉଜ୍ଜ୍ୱଳ ନିସ୍ତବ୍ଧ ସମସ୍ତ କଲଦାସ । ମୃଦୁ ଆଲୋକରେ ଉଦଭାସିତ ହୋଇ ଉଠିଛି ରାଜାଙ୍କର କକ୍ଷ । ଧୀରେ ଧୀରେ ବହୁ ଛାୟା ଶରୀରର ସମାଗମ ଘଟିଛି ସେଇ କୋଠରୀଟିରେ । ଆସିଛନ୍ତି ଫ୍ରାନ୍ସର ସେନାପତି, ପ୍ରଧାନ ଧର୍ମଯାଜକ ଓ ଅନ୍ୟ ଜଣେ ଦୁଇଜଣ ବିଶିଷ୍ଟ ବ୍ୟକ୍ତି । ସେମାନଙ୍କର ନିଦ୍ରିତ ଦେହଗୁଡ଼ିକ ବିଶ୍ରାମରତ ଦୁଗ୍ଧଫେନନିଭ ଶଯ୍ୟାରେ ନିଜ ନିଜ କକ୍ଷରେ । କେବଳ କେତେଗୁଡ଼ିଏ ସାମୟିକ-ବିଦେହୀ ଆତ୍ମା ମିଳିତ ହୋଇଛନ୍ତି ରାଜାଙ୍କର ସୁନ୍ଦର କକ୍ଷରେ ।

ହଠାତ୍ କୋଠରୀଟିକୁ ପଶି ଆସିଛି ସେଣ୍ଟଜୋନ୍‌ଙ୍କର ପବିତ୍ର ଆତ୍ମା । ସମସ୍ତେ ମସ୍ତକ ନତ କରିଛନ୍ତି ସେଇ ଆତ୍ମାଟିର ପଦତଳେ ।

କୃତଜ୍ଞତାର ଅଶ୍ରୁ ଝରି ପଡୁଛି ସମସ୍ତଙ୍କର ଗଣ୍ଡଦେଶ ଦେଇ । ସେମାନେ ଯାହା ପାଇଛନ୍ତି—ରାଜାର ରାଜତ୍ୱ, ସେନାପତିର ସେନାପତିତ୍ୱ ଚର୍ଚ୍ଚର ନିରଙ୍କୁଶ ଅଧିକାର—ସମସ୍ତ ଯେ ସେଣ୍ଟ ଜୋନ୍‌ଙ୍କର ଦାନ ।

ସେଣ୍ଟ ଜୋନ୍ ଅଭିଭୂତ । 'ତମେ ମୋତେ ଏତେ ଭଲ ପାଉଛ ! ତା'ହେଲେ ମୁଁ ମୋର ଅତିମାନୁଷୀ ଶକ୍ତି ବ୍ୟବହାର କରି ଫେରି ଆସୁଛି ଧୂଳିମାଟିର ଧରଣୀକୁ' ।

'ନା' 'ନା' 'ନା' ।

ନାସ୍ତିଧ୍ୱନିର କୋରସ୍ ସେଣ୍ଟଜୋନ୍‌କୁ ବିସ୍ମିତ କରୁଛି ।

'ତମେ ଆସିନ ଜୋନ, ତମେ ନଥାଇ ଆମେ ବେଶ ସୁଖରେ ଅଛୁ । ଆମେ ତମକୁ ପୂଜା କରୁଛୁ । ତମର ଯଶଗାନ କରୁଛୁ । ତମର ପ୍ରତିମୂର୍ତ୍ତି ସ୍ଥାପନ କରୁଛୁ । କିନ୍ତୁ ତମେ ସଶରୀରରେ ଆବିର୍ଭାବ ହେଲେ ଆମ ସୁଖୀ ଜୀବନରେ ଝଡ଼ ସୃଷ୍ଟିହେବ । ଆମେ ତମର ଜୀବନ୍ତ ଦେହକୁ ସ୍ୱାଗତ କରି ପାରିବୁନି ।'

ଅତିଶୀଘ୍ର ଅନ୍ତର୍ହିତ ହୋଇଯାଇଥିଲେ ସମସ୍ତ ବିଦେହୀ ଆତ୍ମା । ସେମାନେ ଫେରି ଯାଉଥିଲେ ନିଜନିଜ ବିଳାସୀ କକ୍ଷରେ ସୁପ୍ତ ସେମାନଙ୍କର ଦେହଗୁଡ଼ିକୁ ।

ବିଷାଦର ଏକ ସକରୁଣ ହସ ମଳିନ କରିଥିଲା, ପବିତ୍ର ଆତ୍ମାର ଅସ୍ପଷ୍ଟ ଅଧରକୁ । ଏକ ଦୀର୍ଘନିଶ୍ୱାସ ସହ ସେଣ୍ଟ ଜୋନ କହି ଉଠିଥିଲେ, 'କେବେ ?

ନେବେ, ଭଗବାନ, ପ୍ରସ୍ତୁତ ହବ ଏ ଦୁନିଆ ତମର ମଶାଲଧାରୀ ଦୂତମାନଙ୍କୁ ସ୍ୱାଗତ କରିବାକୁ ?'

ଏ ଟ୍ରାଜେଡିର କଣ ଶେଷ ନାହିଁ ? ଏକଦା ଆମେରିକାର, ବାର୍ଣ୍ଣା ହତଦଳର ଆସନ୍ତ ଯେଉଁମାନେ, ସେଇମାନଙ୍କର ଅନୁଗାମୀ ମାନେହିଁ ସ୍ୱାଗତ କରନ୍ତି ଜଗଜ୍ଜୟୀ ଅନ୍ଧକାରକୁ । ପୃଥିବୀର ସବୁଠାରୁ କ୍ଷମାଶୀଳ ଉଦାର ମଣିଷଟିର ନାଁ ଉଚ୍ଚାରଣ କରି ଯେଉଁମାନେ ନିଜକୁ କୃତାର୍ଥ ମଣନ୍ତି, ସେଇମାନେହିଁ ଦୁଇଦୁଇଟି ରକ୍ତକ୍ଷୟୀ ଯୁଦ୍ଧରେ ମାନବ ସଭ୍ୟତାକୁ କ୍ଷତବିକ୍ଷତ କରିଚନ୍ତି । ଏସିଆ ଓ ଆଫ୍ରିକା ଭୂଖଣ୍ଡରେ ଯୀଶୁ ଖ୍ରୀଷ୍ଟଙ୍କ ନାମ ଉଚ୍ଚାରଣ ସଙ୍ଗେ ସଙ୍ଗେ ଘୃଣ୍ୟ ସାମ୍ରାଜ୍ୟବାଦର ଚରମ ଗାଢ଼ ଗ୍ରେନାଇଟ ପଥର ଖଣ୍ଡ ଖଣ୍ଡ ବୋହି ଆଣିଚନ୍ତି ଖ୍ରୀଷ୍ଟିୟାନ ପାଦ୍ରୀ ଓ ବଣିକମାନେ ।

ଭଜନର ଦୈବବାଣୀରେ ପ୍ରବଳ ବାଧା ସୃଷ୍ଟି କରିଚନ୍ତି ପ୍ରତାପଶାଳୀ ଖ୍ରୀଷ୍ଟିୟ ମହନ୍ତମାନେ । ପୂର୍ବକାଳରେ ଶତାବ୍ଦୀ ଶତାବ୍ଦୀଧରି ଅନ୍ଧକାରଯୁଗର ପ୍ରବର୍ତ୍ତନ କରିଥିଲେ ତଙ୍କର କର୍ମକର୍ତ୍ତାମାନେ ।

ବିଂଶ ଶତାବ୍ଦୀର ସର୍ବଶ୍ରେଷ୍ଠ ମାନବବାଦୀଟିର ଶରୀର ବନ୍ଧୁକଗୁଳିରେ ଧ୍ୱଂସ ହେବାପୂର୍ବରୁ ଭାରତୀୟ ରାଜନୀତିରେ ଗାନ୍ଧୀଚେଲାମାନଙ୍କର ଅତ୍ୟାଚାର ଆରମ୍ଭ ହୋଇ ସାରିଥିଲା । ଜାତୀୟ ସ୍ୱାଧୀନତାର କେତୋଟି ଦଶନ୍ଧି ମଧ୍ୟରେ ଗାନ୍ଧୀ ଆଦର୍ଶର ଦୀପଶିଖା ଗୃହକୁ ଗୋଟି ଗୋଟି କରି ଲିଭାଇ ଦିଆଯାଇଥିଲା ।

ଖୋସାଭିତରୁ ପ୍ରଜାପତିଟି ଧୀରେ ଧୀରେ ବାହାରି ଆସୁଥିଲା । କାଶୀପୁରର ବନ୍ୟ ସବୁଜିମାର କୋଳରେ ଏକ ମହାନ ବ୍ୟକ୍ତିତ୍ୱର ପ୍ରାଣ-ପ୍ରତିଷ୍ଠା ଆରମ୍ଭ ହୋଇଯାଇଥିଲା ।

ସ୍ୱାମୀଜୀଙ୍କର ନାମ ପ୍ରଥମେ ଖବରକାଗଜରେ ପଢ଼ି ମୁଁ ପ୍ରୀତ ହୋଇଗଲି । ଜେଲର ପ୍ରଥମ ଦଂଶନ ମୋ ସାଥିକୁ ଯେ ବିଚଳିତ କରିପାରିବନି, ଏ ସମ୍ପର୍କରେ ମୁଁ ନିଃସନ୍ଦେହ ଥିଲି ।

ଏକ ଦରିଦ୍ର ପରିବାରର କୁଣ୍ଠାହୀନ ସ୍ନେହ ଓ ଗ୍ରାମବାସୀମାନଙ୍କର ପ୍ରଶଂସାସିକ୍ତ ଶ୍ରଦ୍ଧାରେ ମୋର ଛୁଟିଟି ବିଚ୍ଛିନ୍ନ ଭାବରେ ଅତିବାହିତ ହୋଇଗଲା ।

ତାପରେ ଆସିଲା ସେହି ବହୁ ଆକାଂକ୍ଷିତ ଦିନ । ଟେଲିଗ୍ରାମ ମାଧ୍ୟମରେ ମୋତେ ଶୁଭ ସମ୍ବାଦ ଦେଇଥିଲା ଜଣେ ବନ୍ଧୁ । ଇଂରାଜୀ ଅନର୍ସରେ ମୁଁ ବିଶ୍ୱବିଦ୍ୟାଳୟରେ ପ୍ରଥମ ହୋଇଥିଲି ।

M. A. ଶ୍ରେଣୀରେ ନାମ ଲେଖାଗଲାବେଳେ ମୋ ଉପରେ ପ୍ରଶଂସା ଅଜାଡ଼ି ହୋଇ ଯାଉଥିଲା । ରେଭେନ୍‌ସାର ସେହି ଆଶାସ୍ୱପ୍ନିମ ଦିନଗୁଡ଼ିକରେ ବି ମୁଁ ଜଣକର ଅଭାବ ଅନୁଭବ କରୁଥିଲି । ଭୂମୀଜିକା ଆଉ କଲେଜକୁ ଫେରି ନଥିଲା ।

ହଠାତ୍ ଖବର କାଗଜରୁ ଜାଣିବାକୁ ପାଇଲି ମୟୂରଭଞ୍ଜ ଜିଲ୍ଲାରେ ଏକ ଆଦିବାସୀ ସଙ୍ଗଠନରେ ମୁଖ୍ୟ ଉପଦେଷ୍ଟାଭାବେ ଯୋଗ ଦେଇ ଭୂମୀଜିକା ଏକ ଆନ୍ଦୋଳନର ଡାକରା ଦେଇଛି ।

କୋରାପୁଟରେ ଭୂମୀଜିକା ଆନ୍ଦୋଳନ କରୁଛି ବୋଲି ମୋର ଧାରଣା ଥିଲା । କିନ୍ତୁ ଧୀରେ ଧୀରେ ଏଇ ସ୍ଥିତଧୀ ଯୁବତୀଟି ଯେ ଓଡ଼ିଶାର ସବୁ ଜିଲ୍ଲାରେ ଆଦିବାସୀ, ହରିଜନ ଓ ଦରିଦ୍ର ଶ୍ରେଣୀ ମଧ୍ୟରେ ଚେତନା ସୃଷ୍ଟି କରିବାରେ ଯତ୍ନବାନ ରହିଛି, ତାହା ମୋର ଅଜ୍ଞାତ ଥିଲା ।

ଭୂମୀଜିକାର ଅସାଧାରଣ ସାହସ, କର୍ମଠ ସାଧୁତା, ପ୍ରଚଣ୍ଡ ନିଷ୍ଠା ଓ ଆତ୍ମବିଶ୍ୱାସ ଫଳରେ ସେ ଯେଉଁ ଆନ୍ଦୋଳନ ଗୁଡ଼ିକରେ ଯୋଗଦେଲା; ସେ ସବୁଥିରେ ସେ ସାଧାରଣ କର୍ମୀଙ୍କର ଅସାଧାରଣ ସ୍ନେହ ଓ ବିଶ୍ୱାସର ପାତ୍ର ହୋଇଉଠିଲା ।

କାମୁକ, ଲୋଭୀ ଆଦିବାସୀ ଓ ଅଣ-ଆଦିବାସୀ ରାଜନୈତିକ ନେତାମାନଙ୍କ ମୁକାବିଲା କରି ତାକୁ ବାରମ୍ବାର ଜେଲ ଯିବାକୁ ପଡ଼ୁଥିଲା । ତାକୁ ମାରିଦେବାକୁ ପୋଲିସ ବେଳେବେଳେ ଚେଷ୍ଟା କରିଥିଲା । କିନ୍ତୁ ଅଦ୍ଭୁତ ଭାବରେ ସମସ୍ତ ଷଡ଼ଯନ୍ତ୍ରର କୁହେଳି ଛିନ୍ନକରି ଭୂମୀଜିକା ସୂର୍ଯ୍ୟ ଦୀପ୍ତିରେ ତେଜସ୍ୱାନ୍ ହୋଇଉଠିଲା ।

ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଏମ୍. ଏ. ପାସ କଲାପରେ ମୁଁ ଯେତେବେଳେ ଏକ ଭଲ ଭବିଷ୍ୟର ସ୍ୱପ୍ନ ଦେଖୁଥିଲି, ହଠାତ୍ ଭୂମୀଜିକାର ଏକ ଚିଠି ମୋ ପାଖରେ ପହଞ୍ଚିଲା । ଗଭୀର ସ୍ନେହ ସହ ଭୂମୀଜିକା ମୋତେ ଅନୁରୋଧ ଜଣାଇଥିଲା ମୁଁ ଯେମିତି ଅଗଷ୍ଟ ସତର

ତାରିଖରେ ତାଙ୍କୁ ଭୁବନେଶ୍ୱରରେ ତରୁଣ ଏମ୍ ଏଲ୍. ଏ. ସରୋଜ ସମାଙ୍ଗଙ୍କ କ୍ୱାର୍ଟରରେ ସାକ୍ଷାତ କରେ । ସ୍ୱମୀରିକାର ଏ ଚିଠି ପାଇ ମୁଁ ବିସ୍ମିତ ହୋଇ ଯାଇଥିଲି ।

ଏକ କୌତୁହଳ ଚକିତ ମନ ନେଇ ମୁଁ ସ୍ୱମୀରିକାକୁ ଭୁବନେଶ୍ୱରରେ ଭେଟିଥିଲି । ସ୍ୱମୀରିକାର ପ୍ରଥମ ଦର୍ଶନହିଁ ମୋତେ ଚମକାଇ ଦେଇଥିଲା । ରେଭେନ୍ସା ସମୟର ଗମ୍ଭୀର ତରୁଣଟି ଏକ ପ୍ରାଣୋଚ୍ଛଳ ଯୁବକରେ ପରିଣତ ହୋଇ ସାରିଥିଲା । ଶାଳତରୁଭଳି ଋଜୁ ଏବଂ ପ୍ରଗଳ୍‌ଭ ଯୁବକଟି ଗତ ଦୁଇବର୍ଷ ମଧ୍ୟରେ ଅପ୍ରତିରୋଧ ବ୍ୟକ୍ତିତ୍ୱର ଅଧିକାରୀ ହୋଇ ପଡ଼ିଥିଲା । ଦେଶର ବିଭିନ୍ନ ସମସ୍ୟା ସମ୍ପର୍କରେ ସେ ଚମତ୍କାର ଆଲୋଚନା କରିପାରୁଥିଲା ।

ବହୁ ତରୁଣ ଏମ୍. ଏଲ୍. ଏ. ଗ୍ରୁପ୍ ନେତା ଓ ଯୁବ ନେତା ସ୍ୱମୀରିକା ସହ ଆଲୋଚନା କରିବାକୁ ଆସୁଥିଲେ ।

ବିଶେଷତଃ ଆଦିବାସୀ, ହରିଜନ ସମ୍ପ୍ରଦାୟର ଯୁବକମାନେ ତାଙ୍କୁ ଦେବତାଭଳି ଭକ୍ତି କରୁଥିଲେ ।

ଆଇ. ଏ. ଏସ୍‌ର ସ୍ୱପ୍ନ ଦେଖୁଥିବା ସାକେତ ଶର୍ମା ଆଗରେ ସେଦିନ ଏକ ନୂଆ ଦିଗନ୍ତ ଖୋଲିଯାଇଥିଲା । ସ୍ୱମୀରିକାସହ ଗୋଟିଏ ଦିନପାଇଁ ସାକ୍ଷାତ କରିବାକୁ ଯାଇ ମୁଁ ଆଉ ଘରକୁ ଫେରିପାରିଲିନି । ତା ସହିତ ବିଭିନ୍ନ ସ୍ଥାନକୁ ଯାଇ ବିଭିନ୍ନ ସମସ୍ୟାର ପ୍ରତ୍ୟକ୍ଷ ସମ୍ପର୍କରେ ଆସିବା ନିମନ୍ତ୍ରଣକୁ ମୁଁ ପ୍ରତ୍ୟାଖ୍ୟାନ କରି ପାରିଲିନି ।

ସେହି ଗୋଟିଏ ମାସରେ ବଡ଼ ଅଫିସର ହେବା ଆଶା, ବଡ଼ ବଙ୍ଗଳାରେ ବାସ କରିବାର ମୋର ସ୍ୱପ୍ନର ମହଲ, ଧୂଳିସାତ୍ ହୋଇ ଯାଇଥିଲା । ଚରମ ଦାରିଦ୍ର୍ୟ, ଦୁଃଖ ମଧ୍ୟରେ କର୍ମକୁ ଆଦର ନେଇଥିବା, ମୋ ଭାଇ ଭଉଣୀଙ୍କୁ ମୁଁ ଦେଖିଲି । ନିବିଡ଼ ଅରଣ୍ୟାନୀ, ଯେଉଁଠି ସୂର୍ଯ୍ୟାଲୋକକୁ ମଧ୍ୟ ରାସ୍ତା ଖୋଜିବାକୁ ପଡ଼େ; ମେଘର ଦେଶ, ଯେଉଁଠି ଖରାଦ ମଧ୍ୟ ବର୍ଷା ହୋଇଗଲେ କମ୍ବଳ ଆବଶ୍ୟକ ପଡ଼େ; ମୋତେ ବିସ୍ମିତ ଓ ଅଭିଭୂତ କଲେ । ପ୍ରକୃତି ମଣିଷର କେଯୁର ଛନ୍ଦ ମୋତେ କ୍ଷିପ୍ର ଓ ଉଦାସ କଲା । ପ୍ରତାରଣା ଓ କୁଟିଳତାର ବିଷଧରମାନେ କିଭଳି ସୁନ୍ଦର ଓ ନରମ

ଖୋଳ ମଧ୍ୟରେ ଆତ୍ମଗୋପନ କରନ୍ତି, ସେ ସମ୍ପର୍କରେ ମୋର କିଛିଟା ଧାରଣା ଥିଲା । କିନ୍ତୁ ଦାରିଦ୍ର୍ୟର ସ୍ତରରେ ଅବନତ ହୋଇଯାଉଥିବା ମଣିଷର ମନ ମଧ୍ୟ ଯେ ଏତେ ସୁନ୍ଦର ହୋଇପାରେ, ଏତେ ଅମାୟିକ ସ୍ନେହର ଜନପୂଣୀ ହୋଇପାରେ, ଏହା ମୋର କଳ୍ପନାର ବାହାରେ ଥିଲା । ମାନବ ଆତ୍ମାର ବିଷାଦ ସଙ୍ଗୀତ ମୋର ମନଗହ୍ୱରରେ ଏକ ନୂତନ ଗୁଞ୍ଜନ ସୃଷ୍ଟି କଲା । ସ୍ୱମୀରକାର ନୂତନ ବ୍ୟକ୍ତିତ୍ୱ ମୋତେ ବିହ୍ୱଳ କରିଦେଲା ।

ଏକମାସ ପରେ ମୁଁ ଯେତେବେଳେ ଗାଁକୁ ଫେରି ଜଣାଇଦେଲି ଯେ ସ୍ୱମୀରକା ଓ ମୁଁ ଏକ ନୂଆଁ ପତ୍ରିକାର ଜନ୍ମଜାତକ ତିଆରି କରୁଛୁ, ପରିବାରର ସମସ୍ତେ ବ୍ୟସ୍ତ ହୋଇପଡ଼ିଲେ । ପୃଷ୍ଠ ମାଧ୍ୟମରେ ପ୍ରତିଷ୍ଠା ମୋହ ଚରିତାର୍ଥ କରିବାକୁ ବ୍ୟାକୁଳଥିବା ମୋର ପିତା ପ୍ରଥମେ ସଶବ୍ଦ ପ୍ରତିବାଦ କରି ଉଠିଲେ । ଧୀରେ ଧୀରେ ବନ୍ଧୁବାନ୍ଧବ ଓ ମୁଣ୍ଡବେଣୀ ମହଲରେ ଜଣେ ଉଚ୍ଛୃଙ୍ଖଳ ପ୍ରତିଭାଧାରୀ ଯୁବକର କାରଣ ବହିର୍ଭୂତ ପାଗଳାମୀ ଏକ ସ୍ୱାଦ୍ୟ ଆଲୋଚ୍ୟ ବସ୍ତୁ ହୋଇ ଉଠିଲା । ନିରନ୍ତ୍ ଦାରିଦ୍ର୍ୟର ଆଲିଙ୍ଗନରେ ଜର୍ଜ୍ଜର ବୋଉର ଆଖିରେ ଶ୍ରାବଣର କଳାମେଘ ଘନୀଭୂତ ହୋଇ ଉଠିଲା ।

ଗାଁର ବାତାବରଣ କ୍ରମେ କ୍ରମେ ମୋର ଅସହ୍ୟ ହୋଇଉଠିଲା, ନୂତନ ଜୀବନର ସ୍ୱାଦ ଚାଖିବାପାଇଁ ମୋ ମନ ବ୍ୟାକୁଳ ହୋଇଉଠିଲା । ଜୀବନରେ ଏଭଳି ଏକ ମୁହୂର୍ତ୍ତ ଆସେ ଯେତେବେଳେ କଦା ଦେଖାଯାଉଥିବ । ଏକ ଅଦୃଷ୍ଟ ପାଚେରୀ ଦେହରେ ଏକ ନୂତନ ଦ୍ୱାର ଖୋଲିଯାଏ । ଗୋଟିଏ ନୂତନ ଦେଶ ତାର ସମସ୍ତ ବୈଚିତ୍ର୍ୟ ନେଇ ଆହ୍ୱାନ ଜଣାଏ, 'ଆସ, ମୋ ଭିତରକୁ ଆସ'। ଏଭଳି ଏକ ମୁହୂର୍ତ୍ତରେ ସମ୍ଭବତଃ ପଣ୍ଡିତ ନେହେରୁ ନିଷ୍ପତ୍ତି ନେଇଥିଲେ ତାଙ୍କ ପୁସ୍ତକକୁ, 'ଭାରତର ଆବିଷ୍କାର' ନାମ ଦେବାଲାଗି ।

ସାଫଲ୍ୟର ଯେଉଁ ତାରକାସବୁ ମୋର ଜୀବନର ଗାଡ଼ିକୁ ମୁଁ ଯୋଚିବାକୁ ଯୋଜନା କରି ଆସିଥିଲି ସେ ପର୍ଯ୍ୟନ୍ତ; ସେହି ତାରକାର ଆକର୍ଷଣ ମୋ ପକ୍ଷରେ ଫିକା ପଡ଼ିଗଲା । ଉପବାସ କ୍ଲିଷ୍ଟ ମଣିଷ, କଙ୍କାଳ ହାଡ଼ୁଥିବା ଅସହାୟ ନାରୀ ଓ ଖାଲୁଆ ଗାଲଥିବା ପିଲାମାନେ ମୋର ଦୃଷ୍ଟିପଥ ଉପରକୁ ହଠାତ୍ ଚାଲି ଆସିଲେ । ସେ ପରିପ୍ରେକ୍ଷୀରେ ଏକ ବିଳାସୀ ସମୃଦ୍ଧ, ଶକ୍ତିମାନ୍ ଜୀବନଯାପନ ମୋତେ ଅବାନ୍ତର ମନେ ହେଲା । ବାପାଙ୍କର ଉଦାସୀ

ଚକ୍ଷୁ ଓ ଘର ଭଉଣୀଙ୍କର ଅଶ୍ରୁଝରା ବିଦାୟକୁ ଉପେକ୍ଷା କରି ମୁଁ ଚାଲିଆସିଲି କଟକକୁ ଏକ ନୂଆ ପତ୍ରିକା 'The Rebel'ର ସମ୍ପାଦନ କରିବାକୁ ।

ଜୀବନ୍ମୃତ ଅବସ୍ଥାରେ ଏ କୋଠରୀରେ ସମୟ କଟାଇଲାବେଳେ ମୋ ମନରେ ବେଳେ ବେଳେ ପ୍ରଶ୍ନ ଜାଗ୍ରତ ହୁଏ, 'ମୁଁ କ'ଣ ଭୁଲ୍ କରିଛି ?' ସନ୍ଦେହର ଦଲକାଏ ହେମାଳ ପବନ ଚିନ୍ତାଜଗତକୁ ପଶିଆସେ । ସୃଷ୍ଟି ଯଦି ସୁନ୍ଦର, ତେବେ ଏତେ ଅସୁନ୍ଦରତା ଏଥିରେ ଲୁଚି ରହିଛି କାହିଁକି ? ତାହେଲେ କଣ ସେ ସ୍ରଷ୍ଟା ଯେ ଏତେ ଅସମ୍ପୂର୍ଣ୍ଣ ସୃଷ୍ଟି ମଧ୍ୟ ଲୁଚି ରହିଯାଇଛି ? ବର୍ଣ୍ଣାଡ୍ଶ୍ ଥରେ କହିଥିଲେ, 'ମୃତ୍ୟୁପରେ ଭଗବାନଙ୍କସହ ଦେଖାହେଲେ ମୁଁ ନିଶ୍ଚୟ କହିବି, 'ଭଗବାନ, ତମର ଅସମ୍ପୂର୍ଣ୍ଣ ସୃଷ୍ଟିର କିଛିଟା ଉନ୍ନତି ଅବଶ୍ୟ ମୋ ଦେଇ ହୋଇଛି । ତେଣୁ ତମେ ନିଶ୍ଚୟ ମୋତେ ଧନ୍ୟବାଦ ଦବାର କଥା ।'

ହମୀରିକାର ତ୍ୟାଗର ଶେଷ ପରିଣାମ କ'ଣ ହେଲା ?

ଏତେ ବଡ଼ ଅସମ୍ପୂର୍ଣ୍ଣତା କେମିତି ତମେ ସହିପାରିଲ ସ୍ରଷ୍ଟା ?

ତମେ ପରା ଦ୍ୱାପରଯୁଗରେ ନିଜ ଆଦର୍ଶର ଅବମାନନା କାଳେ ହେବ ବୋଲି ନିଜକୁ ନିର୍ବଂଶ କରି ଦେଇଥିଲ ?

ବନ୍ଧୁବର ରବୀନ୍ଦ୍ର କବିତା ଆବୃତ୍ତିକରି ମନକୁ ସାନ୍ତ୍ୱନା ଦେଉଛି ।
'ଯେ ଫୁଲ ନା ଫୁଟିତେ ଝରେଛେ ଧରଣୀତେ
ଯେ ନଦୀ ମରୁପଥେ ହାରାଲୋ ଧାରା,
ଜାନି ହେ ଜାନି ତାଓ ହୟନି ହାରା'

ତଥାପି ମନରେ କିଛି ଦୁଃଖର ଅବଲୁପ୍ତି ଘଟିନି ।

ସେତେବେଳେ ମୋ ମନରେ ଆବେଗ ଥିଲା, କଳ୍ପନାରେ ମଧୁ ଥିଲା । ଚିନ୍ତାରେ ପରିଚ୍ଛନ୍ନତା ଥିଲା । ପତ୍ରିକାର ପ୍ରଥମ ସଂଖ୍ୟା ହିଁ ବୁଦ୍ଧିଜୀବୀ ମହଲରେ ଆଲୋଡ଼ନ ସୃଷ୍ଟି କଲା । ଅଯାଚିତ ଅନୁଗ୍ରହ ଦେଖାଇବାକୁ ଅନେକ ଆଗେଇ ଆସିଲେ । ମୋର ଗୁରୁଜନ ଭୂୟସୀ ପ୍ରଶଂସା କରି ମୋ ଆଗରେ ପ୍ରଲୋଭନର ଦ୍ୱାର ଉନ୍ମୁକ୍ତ କରିଦେଲେ । ମଝିରେ ମଝିରେ ପ୍ରତିଷ୍ଠିତ ବ୍ୟକ୍ତିଙ୍କଠାରୁ ପ୍ରଚ୍ଛନ୍ନ ଧମକ ମଧ୍ୟ ଶୁଣିବାକୁ ମିଳିଲା ।

ଶୁଣିଛି 'ବନ୍ଦେ ମାତରମ୍' ସମ୍ପାଦନା କରି ଅରବିନ୍ଦ ସାରା ବଙ୍ଗଳାର ଗୁରୁ ହୋଇଯାଇଥିଲେ । ମୋର ସେତେଟା ସାମର୍ଥ୍ୟ ନଥିଲା କିନ୍ତୁ ଏକ ନୂତନ ଚିନ୍ତାଧାରାର ଅଗ୍ରଦୂତ ରୂପେ 'The Rebel' ଏକ ଅନାସ୍ୱାଦିତ ଧୂଳିକ ପୁବ ମହଲକୁ ଦେଇଥିଲା ।

ହମୀରକା ସହିତ ମୋର ସମ୍ବନ୍ଧ ଅଚ୍ଛେଦ୍ୟ ହୋଇଗଲା । ସାରା ଭାରତ ଭ୍ରମଣ କରି ଆମେ ସାଧାରଣ ଲୋକଙ୍କ ସମସ୍ୟାର ଅନୁଧ୍ୟାନ କରିବାକୁ ଲାଗିଲୁ । ଖେଳ ଜଗତର କକ୍ଷଚ୍ୟୁତ ତାରକା ହମୀରକା ଅତି ଆଗ୍ରହରେ ଅଧ୍ୟୟନର ଧୂସର ଜଗତ ମଧ୍ୟକୁ ପଶି ଆସିଥିଲା । ଯେକୌଣସି ସମସ୍ୟା ସମାଧାନରେ ତାର ଏକ ସହଜାତ ବୁଦ୍ଧି ଥିଲା । ସେହି ସହଜାତବୁଦ୍ଧି ଠିକ୍ ମହାତ୍ମାଗାନ୍ଧୀଙ୍କର 'ଅନ୍ତରର ବାଣୀ' ଭଳି ତାକୁ ଉପଯୁକ୍ତ ପଥ ଦେଖାଉଥିଲା ।

ପତ୍ରିକା ଜଗତରେ ଏକ ବିଚିତ୍ର ଅନୁଭୂତି ମୋତେ ବ୍ୟଥିତ କଲା । ବହୁ ସାମ୍ବାଦିକ ଓ ସମ୍ପାଦକ ତାଙ୍କର ସତ୍ୟନିଷ୍ଠା ଓ ନିର୍ଭୀକତା ଦ୍ୱାରା ମୋତେ ଅଭିଭୂତ କରିଦେଲେ । କିନ୍ତୁ ମୁଁ ଏଭଳି ଏକ ଶ୍ରେଣୀର ସାମ୍ବାଦିକ ଓ ସମ୍ପାଦକଙ୍କ ସମ୍ପର୍କରେ ଆସିଲି, ଯେଉଁମାନେ ଭୟାନକ ଭାବରେ ସ୍ୱାର୍ଥପର ଥିଲେ । ସେମାନେ ଅର୍ଥ ଓ ପ୍ରତିଷ୍ଠା ଲୋଭରେ ସତ୍ୟକୁ ହିରଣ୍ମୟ ପାତ୍ର ମଧ୍ୟରେ ଲୁଚାଇ ରଖୁଥିଲେ । କୌଣସି ସାମ୍ବାଦିକ ସମ୍ମିଳନୀ ଦାମିକା ମଦର ବ୍ୟବହାର ବିନା ସଫଳ ହୋଇପାରୁ ନଥିଲା । ଅସଂଖ୍ୟ ଦରିଦ୍ର ଲୋକଙ୍କର ଚକ୍ଷୁରୁ ଯେଉଁ ଦେଶରେ ଆଲୋକ ଲିଭିଯାଇଛି, ସେ ଦେଶରେ ବିଳାସ କକ୍ଷରେ ସୋଫାରେ ବସି ମଦ୍ୟପାନ କରିବା ଦୃଶ୍ୟ ମୋତେ ରୁଚିକର ମନେ ହେଲାନି । ତେଣୁ ଏ ଦେଶର ଅନେକ ତଥାକଥିତ ସାମ୍ବାଦିକ ଓ ସମ୍ପାଦକଙ୍କ ସହ ସମ୍ପର୍କ ରଖିବାକୁ ମୁଁ ଉଚିତ ମନେ କଲିନି ।

ପୋଲା ପୋଲା ମଣିଷ । ଅସଂଖ୍ୟ ଏକାପୁଷ୍ଟୀପୁ ପୋଲା ମଣିଷରେ ଭର୍ତ୍ତି ହୋଇଯାଇଛି ମୋର ଜନ୍ମଭୂମି । ଏକଦା ଯେଉଁ ଧର୍ମ ମଣିଷକୁ ସତ୍‌ପଥରେ ପରିଚାଳିତ କରୁଥିଲା, ଅନ୍ଧବିଶ୍ୱାସ ଓ ସ୍ୱାର୍ଥପରତାର ମରୁ ଭିତରେ ସେ ଧର୍ମର ଧାରା ଅବଲୁପ୍ତ ହୋଇସାରିଛି । ଯେଉଁ ଟିକିକ ଜଳ ଏଠି ଦୃଷ୍ଟି ଗୋଚର ହେଉଛି, ଭିତର ଶୂନ୍ୟ ଆଡ଼ମ୍ବରର ପଙ୍କ ତାକୁ ଦୁର୍ଗନ୍ଧ ଯୁକ୍ତ କରିଦେଉଛି ।

ପରିବ୍ରାଜକ ଭଳି ସ୍ୱାମୀଜୀଙ୍କ ଘୂରି ବୁଲୁଥିଲା ସାରା ଭାରତବର୍ଷ । ସମାଜର ନିମ୍ନତମ ଶ୍ରେଣୀରେ ଦାବାନଳ ଭଳି ପ୍ରସରିଯାଉଥିଲା ତାର ବାଣୀ । ଭାରତର ବିଭିନ୍ନ ପ୍ରଦେଶରେ ଜାଗ୍ରତ ଜନସାଧାରଣଙ୍କ ପଦଧ୍ୱନି ତୀବ୍ରରୁ ତୀବ୍ରତର ହୋଇଉଠୁଥିଲା ।

କେତେକେଉଁ ଯୁଗର ଯାଯାବର ମଣିଷ ଏଦେଶକୁ ଭଲପାଇଲା ଏ ଦେଶର ଆକାଶ, ବତାସକୁ ନିଜର କରିନେଲା: ତା ଇତିହାସ ମଧ୍ୟ ସଠିକ୍ କହିପାରିବନି । ମୌସୁମୀର କାର୍ପଣ୍ୟ ବିହୀନ ଦାନ ଏଦେଶକୁ ଏ ଭଳି ପ୍ରାଚୁର୍ଯ୍ୟରେ ଭରିଦେଇଥିଲା ଯେ ନବାଗତ ଭିନ୍ନ ଭିନ୍ନ ମାନବଗୋଷ୍ଠି ବିଭିନ୍ନ ଯୁଗରେ ନିଜର ସ୍ୱାତନ୍ତ୍ର୍ୟ ଭୁଲି ନିଜକୁ ମହାଜାତିର ପ୍ରବାହରେ ମିଶାଇ ଦେଇଥିଲେ । ଏହି ଭାରତର ମହାମାନବର ସାଗରତୀରେ ଘଟିଥିଲା ସେହି କଲ୍ୟାଣପ୍ରଦ ମିଳନ ।

ହେ ଥାୟ ଆର୍ଯ୍ୟ, ହେ ଥାୟ ଅନାର୍ଯ୍ୟ, ହେ ଥାୟ ଦ୍ରାବିଡ଼ ଚୀନ
ଶକ, ହୁନ ଦେଲ ପଠାନ ମୋଗଲ ଏକଦେହେ ହଲଲୀନ ।

ବ୍ୟବସାୟୀ ସାଜି ଏକଦା ଯେଉଁମାନେ ପାଦଦେଇଥିଲେ ଭାରତ ବର୍ଷରେ, ସେମାନେ ହିଁ ହୋଇଉଠିଲେ ଭାରତର ଭାଗ୍ୟବିଧାତା । ଯୁଗ ଯୁଗ ଧରି ବାତାୟନ ରୁଦ୍ଧ କରିଥିବା ଏକ ବଦ୍ଧସମାଜ ଚଞ୍ଚଳ ହୋଇ ଉଠିଲା ଅନ୍ୟ ଏକ ସଭ୍ୟତାର ସ୍ପର୍ଶରେ ।

ବଣିକ ସଭ୍ୟତାର ଅତ୍ୟାଚାରର ବିରୋଧରେ ସାରା ପୃଥିବୀରେ ଯେଉଁ ଜୁଆର ସୃଷ୍ଟି ହୋଇଥିଲା, ସେଥିରୁ ଭାରତବର୍ଷ ଅଛୁଆଁ ରହିପାରି ନଥିଲା । ସ୍ୱାଧୀନତା ଆନ୍ଦୋଳନର ପତାକାଧାରୀମାନେ ସ୍ୱପ୍ନ ଦେଖିଥିଲେ ଏକ ମହାନ୍ ଦେଶର, ଯେଉଁଠି ଦାରିଦ୍ର୍ୟର ନିର୍ମମ ଆଘାତରେ ନିଷ୍ପାପ କଳିକା ଭଳି ସୁନ୍ଦର ବାଳକ, ବାଳିକାଗଣ ବୃନ୍ତଚ୍ୟୁତ ହେବେନି । ଚରମ ବିଡ଼ମ୍ବନା ଭିତରେ ସ୍ୱପ୍ନ ସମାଧି ଲଭିଲା ।

ଗଢ଼ି ଉଠିଲା ଏକ ନୂଆ ସମାଜ, ଯାହାର ଶାଣିତ ଅସ୍ତ୍ରହେଲା ସ୍ୱପୋଷାସୀ । ଗାନ୍ଧୀ ନେହେରୁଙ୍କ ଆଦର୍ଶକୁ ଠିକ୍ ତାଙ୍କର ନାମରେ ହିଁ ହତ୍ୟା କରାଗଲା । ସମାଜର ଦୂଷିତ ବ୍ୟକ୍ତିମାନେ ରାଜନୈତିକ ବଡ଼ପଣ୍ଡା ହୋଇବସିଲେ ।

ସ୍ୱାଧିନୋତ୍ତର ଭାରତରେ ଗାନ୍ଧୀ-ସୂର୍ଯ୍ୟ ଅସ୍ତମିତ ହେଲାପରେ ଉତ୍ତରପୂର୍ବରେ ଦେଖାଦେଇଥିଲେ ଦୁଇଟି ଉଜ୍ଜ୍ୱଳ ତାରକା ! ଲୋହିଆ ଓ ଜୟପ୍ରକାଶ । ଗଣତାନ୍ତ୍ରିକ ମୂଲ୍ୟବୋଧ ଧ୍ୱଂସ କରିବାପାଇଁ ଯେଉଁ ବାଦଲଟି ପ୍ରଥମେ ଜନ୍ମ ନେଇଥିଲା ଦିଲ୍ଲୀ ଆକାଶରେ, ସେହି ବାଦଲଟି ଧୀରେ ଧୀରେ ଛାଇଗଲା ସାରା ଦେଶକୁ । ତାପରେ ଆକାଶ ସାରା ମାତ୍ର ରହିଲା କେବଳ ଏକ କଳା ଚଦର ।

ପୁରାତନ ଯୁଗ; ଭାରତବର୍ଷର ସେଇ ଅତ୍ୟୁଜ୍ଜ୍ୱଳ ଦିନଗୁଡ଼ିକ, ଇତିହାସର ଏକମୁଖୀ ସ୍ରୋତରେ ବିଲୀନ ହୋଇଯାଇଛି । ଭାରତୀୟ ସମାଜ ଏକ ମୋହାଚ୍ଛନ୍ନ ତନ୍ଦ୍ରାଳୁତାର ବଶବର୍ତ୍ତୀ ହୋଇ ସେଇ ଯୁଗର କେବଳ ମୃତ-କାଷ୍ଠକୁ ଜାକୋଡ଼ି ଧରି ବସିଛି ବହୁମୂଲ୍ୟ ମଣି ମାଣିକ୍ୟ ଭଳି । ଶୁଷ୍କ ଆଚାର ଓ ଆଚରଣର ଘାସ ଓ ଦଳଗୁଡ଼ିକ ଜାତୀୟ ଭାବଧାରାର ହ୍ରଦ-ଜଳକୁ ଆଚ୍ଛନ୍ନ କରି ରଖିଛି । ୟୁରୋପୀୟ ସମାଜର ଯାହା କିଛି ମୂଲ୍ୟବାନ ଉପାଦାନ ତାକୁ ମଧ୍ୟ ଭାରତୀୟ ସମାଜ ଗ୍ରହଣ କରିପାରିନି । ସେହି ସମାଜର କେତେକ ପ୍ରାଣହୀନ ଆଚାର ଏବଂ ପ୍ରଥାକୁ ଆଲିଙ୍ଗନ କରି ଭାରତୀୟ ସମାଜର ଏକ ପ୍ରଭାବଶାଳୀ ଗୋଷ୍ଠି ନିଜର ଆଧୁନିକତାର ପରିଚୟ ଦଉଛି ।

ଦୁଇ ପ୍ରଧାନ ସଭ୍ୟତାହାରା ଚକ୍ରିଳ କେଦାରରେ ଭଣ୍ଡୋଦାସୀ ଓ ଗୁଣ୍ଡାବାଦର ବାଳୁଙ୍ଗା ପ୍ରଚୁର ଭାବରେ ବଢୁଚନ୍ତି । ବୟସ୍କ ମହଲର ଭଣ୍ଡୋଦାସୀ ଏବଂ ତରୁଣ ମହଲର ଗୁଣ୍ଡାବାଦ ଦୁଇ ସମାନ୍ତର ରେଳଧାରଣା ଉପରେ ଭାରତୀୟ ଶାସନର ଏକ୍‌ସ୍‌ପ୍ରେସ୍ ପତନର ଷ୍ଟେସନ୍ ଆଡ଼େ ଦ୍ରୁତଗତିରେ ମୁହାଁଇ ଚାଲିଛି ।

ବହୁବର୍ଷ ହେଲା ଭାରତୀୟ ସମାଜ ସହ ବିଚ୍ଛିନ୍ନ ରହିବା ବ୍ୟକ୍ତି ପକ୍ଷରେ ଏଭଳି ମନ୍ତବ୍ୟ ଦବା ସମ୍ଭବତଃ ଉଚିତ ନୁହେଁ । ଏ କାରାବାସ ମୋ ଉପରେ ଜବରଦସ୍ତ ଲଦି ଦିଆଯାଇଛି ଯା ଫଳରେ ମୋର ସମାଜ ସହ ସମ୍ପର୍କର ତାର ଛିନ୍ନ ହୋଇଯାଇଛି । ମୁଁ ଜାଣେନା ମୋ ଦେଶ ବର୍ତ୍ତମାନ କେଉଁ ଅବସ୍ଥାରେ ରହିଛି । ଏକ ଦଶନ୍ଧି ତଳେ ଯେଉଁ ପଦସ୍ଥ ସଇତାନମାନେ ବ୍ରମୀରକାକୁ ହତ୍ୟା କରିଥିଲେ, ସେମାନେ ଏ ଅନ୍ଧାରି ସୁଡ଼ଙ୍ଗ ବାସର ବ୍ୟବସ୍ଥା ମୋ ପାଇଁ କରିଥିଲେ ।

କାରବାସର ପ୍ରତଖଟିର ସନ୍ତୁତପୂତା ଯୋଗୁଁ ମୋତେ ଲେଖିବାର ସୁଯୋଗ ମିଳିଲା, ଉପନିଷଦ, ପୁରାଣ, ମହାଭାରତ ପାଠକଲା ବେଳେ ତା ମନରେ ମୋ ପ୍ରତି ଯେଉଁ ଶ୍ରଦ୍ଧାର ଭାବଟି ସୃଷ୍ଟି ହୋଇଯାଇଥିଲା, ତାର ଫଳରେ ମୋର ସ୍ୱାଧୀନତା ଏଠାରେ କଟିଯାଇଥିଲା ।

ଲଣ୍ଡନରେ ବୋଧହୁଏ କଳ୍ପ ଗୋଳମାଳ ଦେଖାଦେଲାଣି । ମୋର ଜୀବନ କଥା ଉଳ ତାରକଟି ମଧ୍ୟ ଅଦୃଷ୍ଟ ଆଲେକଙ୍କୀ ବାହୁଶାଳ କରୁଛି କଥା ବଦଳାଇବା ପାଇଁ ତୋତେ ମୋର ଅଭିଭାବକଙ୍କୁ ଜଣାଇବାକୁ ପଡ଼ିବ ।

ହାୟ ! ଦେହୀର ଅଧିକାର ମୁଁ ଯାକୁ ଦେଇନ, ସୁଖ, ସମୃଦ୍ଧିର ସ୍ୱପ୍ନ ଯାର ମୁଁ ଚ଼ରମାର କରି ଦେଇଛ, ସେଇ ମେଷଶାବକ ଭଳି ନିଷ୍ପାପ ଓ ଆଜ୍ଞାବହ ସ୍ତ୍ରୀଟିର ଭାବନା ବେଳେ ବେଳେ ମୋ ମନରେ ବେଦନାର ସ୍ରୋତ ସୃଷ୍ଟି କରୁଛି ।

'ତପ୍ଲାଗ' ଦନ୍ଦି ଜାତି ଧୀରେ ଧୀରେ ଖ୍ୟାତିରେ ଚରମ ଶିଖରକୁ ଉଠୁଥିଲା । କ୍ଷମତାସୀନ ରାଜନୀତିଜ୍ଞମାନଙ୍କର ଅରୁଣାପ୍ଲୀତ ଦୃଷ୍ଟି ଧୀରେ ଧୀରେ ଆମମାନଙ୍କର ଉପରେ କେନ୍ଦ୍ରିତ ହୋଇ ଉଠୁଥିଲା ।

ସ୍ୱାଧୀନତା ପ୍ରାପ୍ତିର ଅବ୍ୟବହିତ ମୁହୂର୍ତ୍ତରେ ଭବିଷ୍ୟତଦ୍ରଷ୍ଟା ଜାତିର ପିତାଙ୍କର ସତର୍କ ଉପଦେଶ କଲିକତାର ବାୟୁମଣ୍ଡଳରେ ଗୁଂଜରି ଉଠିଥିଲା ।

> "Beware of power. Power corrupts. Do not let yourself be trapped by its pomp and pageantry. Remember you are in office to serve the poor in India's villages.'
>
> 'କ୍ଷମତା ବିଷୟରେ ସାବଧାନ ରହ । କ୍ଷମତା ଦୁର୍ନୀତିଗ୍ରସ୍ତ କରାଏ । ତାର ଜାକଜମକ ଓ ଚାକଚକ୍ୟ ତମକୁ କବଳିତ ନ କରୁ । ମନେରଖ, ତମେ ଆସିଚ ଭାରତର ଗ୍ରାମାଞ୍ଚଳର ଦୁଃଖୀ ଲୋକଙ୍କର ସେବା କରିବା ପାଇଁ ।'

କ୍ଷମତାର ମରୁଭୂମିରେ ହଜିଗଲା ମୂଲ୍ୟବାନ ଉପଦେଶର ଅମୃତ କଣାଗୁଡିକ । ଭସ୍ମକର ସମ୍ପୃତାମ ଗାନ୍ଧୀ ଭକ୍ତମାନଙ୍କ ହାତରେ ଦେଶ ଅଣଳଶ୍ମାସୀ ହୋଇଉଠିଲା ।

ଦେଶ ପାଇଁ ଚିନ୍ତା କରୁଥିବା ଯୁବକ ମନରେ ପ୍ରଶ୍ନ ଜାଗି ଉଠିଲା, 'ପନ୍ଥା କାହିଁ ? କଃ ପନ୍ଥା ?'

ଅତୀତରେ ଯକ୍ଷଙ୍କ ପ୍ରଶ୍ନର ଉତ୍ତର ଦେଇଥିଲେ ସ୍ଥିରମନା ଯୁଧିଷ୍ଠିର ।

'ମହାଜନୋ ଯେନ ଗତଃ ସ ପନ୍ଥା'

ମହାଜନ ? କିଏ ସେହି ମହାଜନ ?

ଏଇ ପୃଥୁଳକାୟ ମନ୍ତ୍ରୀ ଗୃହକ, ଯେଉଁମାନଙ୍କର ଶିର ସ୍ପଶିରରେ ପ୍ରବାହିତ କଳାଟଙ୍କାର କଳୁଷିତ ରକ୍ତ ?

ଗୁଣ୍ଡା ଏବଂ ଟାଉଟରଙ୍କ ପୃଷ୍ଠପୋଷକ ଏଇ ରାଜନୀତିଜ୍ଞ, ଯେଉଁମାନଙ୍କ ହାତରେ ସାରା ଦେଶ ଖାନ୍ତ ଖାନ୍ତ ହବ ଯାଉଛି ?

ଜନତାର ସ୍ପନ୍ଦନ ନାହିଁ । ଏଇ ମହାପୁରୁଷ ଇନ୍ଦ୍ରମାନେ ତାକୁ ନଷ୍ଟ କରି ପ୍ରସ୍ତରୀଭୂତ କରିଦେଇଚନ୍ତି ।

କାହାନ୍ତି ସେହି ଦଶରଥସୁତ ଯେ ଏଇ ପ୍ରସ୍ତରୀଭୂତ ଅହଲ୍ୟାକୁ ଜୀବନ ଦେବେ ।

ଗୋଧୂଳି ବେଳାରେ ଅଫିସରେ ବସି ସମ୍ପାଦକୀୟ ଲେଖୁଛି, ହଠାତ୍ ଟେଲିଗ୍ରାମ ପହଞ୍ଚିଲା, 'ବାପା ବେମାର ଘରକୁ ଆସ ।'

ପଡ଼ିରହିଲା କାଗଜ ଓ କଲମ । ଜଣେ ଯୁବବନ୍ଧୁଙ୍କୁ ଦାୟିତ୍ଵ ଦେଇ ମୁଁ ଚାଲିଲି ଘରକୁ ।

ସେତ ରାତିରେ ଘରେ ପହଞ୍ଚି ଦେଖିଲି ବାପା ଶଯ୍ୟା ଆସନରେ ଶୋଇଛନ୍ତି । ବୁଝିପାରିଲି କିଛି ଗୋଟିଏ ବାହାନା ହୋଇଛି ମୋତେ ଘୋଷା ମନାଇବା ପାଇଁ ।

ସକାଳର ଜଳଖିଆ ଖାଇଲାବେଳେ ଭଉଣୀ ଠାରୁ ପ୍ରକୃତ ତଥ୍ୟ ପାଇଲି । ସମସ୍ତେ ଲାଗିପଡ଼ି ଯୋଗାଡ଼ କରିଚନ୍ତି ଗୋଟିଏ ନାଲି ଟୁକୁଟୁକୁ ସାଧବ ବୋହୂଟିଏ ଅରୁଣା ମଇଁଷିକୁ ଖୁଣ୍ଟିରେ ବାନ୍ଧିବା ଲାଗି ।

ମୋର ଆପତ୍ତି, ଅଭିଯୋଗ ବୋଉର ଅଶ୍ରୁଜଳ ଓ ବାପାଙ୍କ କ୍ରୋଧର ଯଜ୍ଞରେ ଆହୁତି ହୋଇଗଲା । ଏକ ବଳିପଶୁ ଭଳି ମୋତେ ବିବାହ ବେଦୀରେ

ବସାଇ ଦିଆଗଲା । ତାଙ୍କ ଧାରଣା ବିବାହ ପରେ ମୋର ମାନସିକ ପରିବର୍ତ୍ତନ ଅବଶ୍ୟମ୍ଭାବୀ ହୋଇଉଠିବ ।

ବିବାହ ହୋଇଗଲା । ବିତୃଷ୍ଣମନ ଓ କ୍ଳାନ୍ତ ଦେହନେଇ ମଧୁଚନ୍ଦ୍ରିକା ଯାପନ କରିବାକୁ ପ୍ରସ୍ତୁତ ନଥିଲି ।

ପ୍ରଥମ ଦେଖାରେ ହିଁ ପ୍ରଭା ମୋତେ ଚକିତ କରିଦେଲା । ତରୁଣୀ ଦେହରେ ରୂପର ଅସୁମାରି ତେଜ । ସ୍ୱଳ୍ପଶିକ୍ଷିତା ଗ୍ରାମ୍ୟକନ୍ୟାଟି ମୋତେ ଖୁବ୍ ଭଲ ଲାଗିଲା । ମୋର ପରାମର୍ଶ ନ ନେଇ ବାପା ବିବାହ ବ୍ୟବସ୍ଥା କରିଦେଇଥିବାରୁ ମନରେ ଯେଉଁ କ୍ଷୋଭ ଥିଲା; ତାହା ମୁହୂର୍ତ୍ତକରେ ଦୂର ହୋଇଗଲା । ଏଇ ନିରୀହ କଣ୍ଢେଇଟିକୁ କୌଣସି ପ୍ରକାର ଅସୁବିଧାର ସମ୍ମୁଖୀନ କରାଇବାକୁ ମୋ ବିବେକ ବିରୋଧ କଲା ।

ଲାଜକୁଳି ଝିଅଟିକୁ ମୋ ନିକଟରେ ଖଟରେ ବସାଇ ପ୍ରଶ୍ନ ପଚାରିବାକୁ ମୋତେ ଭଲ ଲାଗିଲା । ପ୍ରଥମେ ପ୍ରଥମେ ଉତ୍ତର ଦେବାକୁ ତାର ଯେଉଁ ସଙ୍କୋଚ ଥିଲା, ତା ଧୀରେ ଧୀରେ କଟିଗଲା । ତାପରେ ସେ ଅତି ନମ୍ର କଲ୍ଲ ମଦ୍ଧୁଝ୍ଵ ସ୍ୱରରେ ତା ଗାଁର ବିଭିନ୍ନ ବସ୍ତୁ ସମ୍ପର୍କରେ ଆବେଗପୂର୍ଣ୍ଣ ଭାବରେ କହିବାକୁ ଲାଗିଲା, ବୁଝିପାରିଲି ବାଳିକାଟିର ବଧୂ-ମନ ଆସିବାକୁ ବିଳମ୍ବ ଅଛି । ଠିକ୍ ଏକ ଖେଳସାଥିଭଳି ମୁଁ ତାକୁ ତାଙ୍କ ଗାଁର ପୋଖରୀ, ବରଗଛ, ଶିବମନ୍ଦିର ଓ ଆମ୍ବତୋଟା ସମ୍ପର୍କରେ ପ୍ରଶ୍ନ ପଚାରିଲି । ତାର ଉତ୍ସାହ ଦେଖିକରିବେଳ ବୁଝିପାରିଲି । ମୋ ଭଳି ଜଣେ ଆଗ୍ରହୀ ଶ୍ରୋତାପାଇ ସେ ସେଦିନ ସୁନ୍ଦର ଭଙ୍ଗୀରେ ତା ଘର, ପରିବାର ଓ ଗାଁ ବିଷୟରେ ସବୁକଥା ଗପି ଯାଇଥିଲା ।

ତାର ଗୋଲାପି ଗଣ୍ଡ ଦେଶରେ ଚୁମାଦେଇ ପ୍ରଭାକୁ ଦେହକୁ ଆଉଁସାଇ ନେଇଥିଲି । ମନରେ ଦୁଃଖ ହେଲା ଯେ ଏକ ମଧୁର ସ୍ୱପ୍ନ ଦେଖୁଥିବା ବାଳିକାକୁ ଗୋଟିଏ ଅଗ୍ନି କଣିକାସହ ଛନ୍ଦି ଦିଆଯାଇଥିଲା ।

ବସ୍ତୁ ଜୀବନ ମୁହୂର୍ତ୍ତେଇ ଗତିକରି ପ୍ରଭା କ୍ଷତାକ୍ତ ହୋଇଛି । ସେ ଦିନର ସେହି ନିଷ୍ପାପ ବାଳିକାର ଖୋସାଭିତରୁ ଜଣେ ସାହସିନୀ ଯୁବତୀର ଆବିର୍ଭାବ ହୋଇଛି ।

ପ୍ରଭା ବୁଝିପାରିଥିଲା ମୁଁ କାହିଁକି ବଡ଼ ଅଫିସର୍ ହେବାର ନିଶାରେ ଯାଯାବର ସାଜିଛି । ଧୀରେ ଧୀରେ ସେ ମୋ ମନ ସହିତ ତାର ମନକୁ ମିଶାଇ ଦେଇଥିଲା ।

ବାପା ବୋଉ ବିରକ୍ତ ହୋଇଛନ୍ତି । ପ୍ରଭା ଭଳି ଝିଅ ମଧ୍ୟ ମୋତେ ପାଞ୍ଚଜଣଙ୍କ ଦ୍ୱାରା ସମର୍ଥିତ ପଥ ଉପରକୁ ନେଇଆସି ପାରିଲାନି; ଏକଥା ତାଙ୍କୁ ବ୍ୟଥିତ କରୁଛି । ବହୁଦିନ ବାହାରେ ବୁଲି ଅସ୍ବନକ ଭାବରେ ବେଳେ ବେଳେ ଖେଦ ଅଭିଭୂତ ହୋଇଛି । ପ୍ରଭାର ମ୍ଳାନମୁଖ ଦେଖି ଜାଣିପାରୁଛି ସେ ସେଦିନ କେବଳ ଚୋରାଣି ଖାଇ ବଞ୍ଚିଛି ।

ପ୍ରଭାର କୋଳକୁ ମୁନ୍ନା ଆସିଛି ଚମତ୍କାର ଚେହେରା ନେଇ । ବେଳେବେଳେ ସେମାନଙ୍କୁ ଭୋକରେ ରହିବାକୁ ପଡୁଛି । ରୋଗ ହେଲେ ସେମାନେ ଔଷଧ ପାଇନାହାନ୍ତି ।

ଚନ୍ଦନ ଜଙ୍ଗଲର ଦୁଃଖାର୍ତ୍ତ ଆଦିବାସୀଙ୍କ ମେଳରେ ବୁଲିଲାବେଳେ ମଧ୍ୟ ସ୍ୱାମୀଜୀ କେତେବେଳେ ମୋ ଘରକୁ ଟଙ୍କା ପଠାଇଛନ୍ତି, କାରଣ ସ୍ୱାମୀଜୀ ଜାଣିଥିଲେ ଯେ ମୁଁ ମୋ ପରିବାର ବିଷୟରେ ପୂର୍ଣ୍ଣମାତ୍ରାରେ ଉଦାସୀନ ।

ଉଚ୍ଚଫେରିଲାପରେ ଦାମିକା ହୋଟେଲରେ ବିଦେଶୀସୁରା ପାନକରୁଥିବା ଓ ରୂପସୀ ନର୍ତ୍ତକୀମାନଙ୍କୁ ବାହୁପାଶରେ ପିଷ୍ଟ କରୁଥିବା ଖଦଡ଼ଧାରୀ ମନ୍ତ୍ରୀମାନଙ୍କ ସଂପର୍କରେ ଯେତେବେଳେ ମୋ ପାଖରେ ସମ୍ବାଦ ପହଞ୍ଚେ, ମୋ ମନ ବିଷାଦର ତରଙ୍ଗରେ ଭରିଯାଏ । ନାଥୁରାମ୍ ଗଡ୍‌ସେ ସିନା ଗାନ୍ଧୀଙ୍କ ଶରୀରକୁ ହତ୍ୟା କରିଥିଲା, ଗାନ୍ଧୀଙ୍କ ଆଦର୍ଶକୁ ହତ୍ୟା କରିବାର ସାହସ ସେ କରିପାରି ନଥିଲା । ଗାନ୍ଧୀଙ୍କ ଆଦର୍ଶକୁ ପ୍ରତି ମୁହୂର୍ତ୍ତରେ ହତ୍ୟାକରି ଗାନ୍ଧୀ ପ୍ରତିମାଗଳାରେ ଫୁଲମାଳ ପକାଇଥିବା ଏଇ ଭୟାନକ ଗୋଷ୍ଠୀ ଭାରତରେ ଦାରିଦ୍ର୍ୟ ଓ ଶୋଷଣକୁ ଚିରସ୍ଥାୟୀ କରି ଦେଲେ ।

ରାମଗିରି ଆଶ୍ରମରେ ସମୟ ଅତିବାହିତ କରୁଥିବା ଶାପଗ୍ରସ୍ତ ଯକ୍ଷ ମେଘ ସମକ୍ଷରେ ପ୍ରିୟାର ଯେଉଁ ଚିତ୍ର ଅଙ୍କନ କରିଥିଲା ତା ମୋର ବେଳେ ବେଳେ ମନେ ପଡ଼ି ଯାଉଛି ।

ନୂନଂ ତସ୍ୟାଃ ପ୍ରବଳରୁଦିତୋ ଚଚ୍ଛୂନ ନେତ୍ରଂପ୍ରିୟାୟାଃ
ନିଃଶ୍ୱାସାନାମ-ଶିଶିରତୟା ଭିନ୍ନ ବର୍ଣ୍ଣା ଧରୋଷ୍ଠମ୍
ହସ୍ତନ୍ୟସ୍ତଂ ମୁଖମସକଳ ବ୍ୟକ୍ତି ଲମ୍ବାଳକତ୍ୱା
ଦିନ୍ଦୋର୍ଦୈନ୍ୟଂ ତ୍ୱଦନୁସରଣଂ କ୍ଲିଷ୍ଟକାନ୍ତେ ବିଭର୍ତ୍ତି ।

କ୍ରନ୍ଦନର ଆଧିକ୍ୟ ଯୋଗୁ ନେତ୍ର ଫୁଲିଯାଇଥିବ । ଉଷ୍ଣ ନିଶ୍ୱାସ ଯୋଗୁଁ ଅଧର ବର୍ଣ୍ଣହୀନ ହୋଇଯାଇଥିବ । ହସ୍ତ ମୁଖଉପରେ ନ୍ୟସ୍ତ କରିଥିବ । ଲମ୍ବବାଳ ଯୋଗୁ ମୁଖର ସବୁ ଅଂଶ ଦୃଷ୍ଟି ଗୋଚର ହେଉ ନଥିବା ମେଘ ଆକାଶରେ ଥିଲେ ଯେଉଁଭଳି ଚନ୍ଦ୍ରମାର କାନ୍ତି ମଳିନ ଜଣାପଡ଼େ, ସେହିଭଳି ମୋ ପ୍ରିୟାର କାନ୍ତି ମୋ ବିରହ ଯୋଗୁ ଅନୁଜ୍ଜ୍ୱଳ ଜଣାପଡ଼ୁଥିବ ।

ଦେହଳୀଦତ୍ତ ପୁଷ୍ପଦ୍ୱାରା ଶାପର ଅବଧି ଗଣନା କରି ବସିଥିଲା ଯକ୍ଷପତ୍ନୀ । ନିରାଶାର ଘନ ଅନ୍ଧାର ଭିତରେ ତା ପାଇଁ ଆଶାର ତାରା ମିଟିମିଟି କରୁଥିଲା କାରଣ କୁବେରଶାପ ଅନ୍ତହୀନ ନଥିଲା ।

ପ୍ରଜାର ନିରାଶା ଅମାବାସ୍ୟାର ଅନ୍ଧାରଭଳି ଛିଦ୍ରହୀନ । ତାର ଆକାଂକ୍ଷାର ପୁଷ୍ପିତ ଲତା ଚିରଦିନପାଇଁ ଛିନ୍ନମୂଳ । କେବଳ ମୁନାର ସାନ୍ନିଧ୍ୟ ତାକୁ ଦେଉଥିବ ବଞ୍ଚିବାର ପ୍ରେରଣା । ଅସଂଖ୍ୟ କୁଟୀରରୁ ଯେତେବେଳେ ହାହାକାରର ସ୍ୱର ଫୁଟିଆସେ, ଅଭାବର ଦୈତ୍ୟ ଯେତେବେଳେ ଲହଲହ ଜିଭରେ ଗାଁକୁ ଗାଁ ଚାଟି ବୁଲେ ମନ୍ତ୍ରୀଙ୍କ ପଦଲେହୀମାନେ ବ୍ୟସ୍ତ ହୋଇପଡ଼ନ୍ତି କୌଣସି ସୁନ୍ଦରୀ ଗ୍ରାମସେବିକା, ନର୍ସ କିମ୍ବା କନ୍ୟାଶ୍ରମର ଶିକ୍ଷୟିତ୍ରୀକୁ ଫନ୍ଦା ଭିତରେ ପୂରାଇବାପାଇଁ ।

ଏକ ଘୂର୍ଣ୍ଣିବାୟୁ ଭଳି ଘୂରିବୁଲୁଥିବା ହମୀରକା ସମଗ୍ର ଦେଶରେ । ନାଗାଲାଣ୍ଡରୁ ସୌରାଷ୍ଟ୍ର, କାଶ୍ମୀରରୁ କୁମାରିକା; ସବୁ ସ୍ଥାନ ତାର କଠିନ ପଦଧ୍ୱନି ଶୁଣୁଥିଲା ।

ହମୀରକାର ଅନୁଭୂତି 'The Rebel'ର ପୃଷ୍ଠା ମଣ୍ଡନ କରୁଥିଲା ହମୀରକାର ବାଣୀ ଦେଶର କୋଣ ଅନୁକୋଣରେ ପହଞ୍ଚୁଥିଲା ।

ବିରୋଧୀଦଳ ଏବଂ ସରକାରୀଦଳ ଉଭୟଙ୍କ ପକ୍ଷରୁ ଲୋଭନୀୟ ଆହ୍ୱାନ ହମୀରକା ହସି ହସି ପ୍ରତ୍ୟାଖ୍ୟାନ କରିଥିଲା । ସେଥିଲା ଜନଶକ୍ତିର ଅକୃତ୍ରିମ

ବିଶ୍ୱାସୀ । ରାଜନୀତିକୁ ପେଶା କରିଥିବା ମୁଷ୍ଟିମେୟ ସନ୍ତୁଷ୍ଟ କିମ୍ବା ଅସନ୍ତୁଷ୍ଟ ଲୋକଙ୍କଦ୍ୱାରା ଯେ ଏ ଦେଶରେ ସ୍ୱର୍ଣ୍ଣଯୁଗ ଚାଲିଆସିବ ଏ ଭ୍ରମଧାରଣା ତାର ନଥିଲା । ସେ ଆହ୍ୱାନ ଦେଉଥିଲା,'କୌଣସି ଦେଶର ଗଣତାନ୍ତ୍ରିକ ପରିବେଶର ସର୍ବଶ୍ରେଷ୍ଠ ଗ୍ୟାରେଣ୍ଟିଦାତା ସେ ଦେଶର ସଚେତନ ଜନସାଧାରଣ । ଦୁର୍ନୀତିଗ୍ରସ୍ତ ପାଞ୍ଚବର୍ଷିଆ ପ୍ରତିନିଧି କିମ୍ବା କ୍ଷମତା ନ ମିଳିଥିବା ଯୋଗୁଁ ଆନ୍ଦୋଳନର ଡାକରାଦେଉଥିବା ରାଜନୈତିକ ନେତା ନୁହନ୍ତି ।

ବେଳେବେଳେ ମୁଁ ସେତେବେଳେ ନିରାଶ ହୋଇ ଭୂମିକାକୁ ପ୍ରଶ୍ନ କରେ, ଭୂମିକା ଉତ୍ତର ଦିଏ, 'ରୋମ୍ ଗୋଟିଏ ଦିନରେ ତିଆରି ହୋଇ ନଥିଲା ବନ୍ଧୁ; ତମେ ତମର କର୍ତ୍ତବ୍ୟ କରିଯାଅ ।'

କଳାକାରମାନଙ୍କୁ ଜାମାତାର ସମ୍ମାନ ଦେଉଥିବା ସରକାର ଭୂମିକାକୁ ବିଷଚକ୍ଷୁରେ ଦେଖୁଥିଲେ । ଭୂମିକାର ଅସମ୍ଭବ ଜନପ୍ରିୟତା ତାକୁ କଥା କଥାକେ ଗିରଫ ହେବାରୁ ବଂଚିତ କରାଇଥିଲା ।

କଲିକତାର ବିରାଟ ମଇଦାନରେ ସେ ସଦର୍ପରେ ଘୋଷଣା କରିଥିଲା, 'ଆଉ ବେଶୀ ବିଳମ୍ବ ନାହିଁ । ବଣଜଙ୍ଗଲର ଅସଭ୍ୟ ମଣିଷ ଆଉ ଦୁଇ ବଳଦ ସନ୍ଧିରେ ଜନ୍ମ ହେଉଥିବା ଗାଁ ଲୋକଙ୍କ ପଦଧ୍ୱନିରେ ଏଥର ବଡ଼ ବଡ଼ ସହର ଥରହର ହବ ।'

ଏଦେଶର ରକ୍ତରେ ସମ୍ଭବତଃ କଟ୍ଟର ସାମନ୍ତବାଦର ନିଶା ଅଛି, ଯା ଫଳରେ ଦେଶବାସୀ ସବୁବେଳେ କୌଣସି ଏକ ସୁପରମ୍ୟାନ୍‌ର ଆଶ୍ରା ଖୋଜନ୍ତି । ମୂର୍ତ୍ତିପୂଜାର ପ୍ରଚଣ୍ଡ ବିରୋଧୀ ରାମସ୍ୱାମୀ ନାଇକରଙ୍କ ସମ୍ବନ୍ଧରେ ସବୁଠାରୁ ମଜାକଥା ହେଉଛି ତାଙ୍କର ମୃତ୍ୟୁପରେ ତାଙ୍କର ଏକ ମୂର୍ତ୍ତି ତାଙ୍କ ଅନୁଗାମୀମାନେ ତିଆରି କରିଥିଲେ । ମୂର୍ତ୍ତିପୂଜାର ଅନ୍ୟତମ ବିରୋଧୀ ଗୌତମବୁଦ୍ଧଙ୍କ ମୂର୍ତ୍ତି ଭାରତର ସବୁ ପ୍ରାନ୍ତରେ ଦେଖାଯାଏ ।

ଭୂମିକାର ସାହାସ, ସାଧୁତା ଓ ସାରଲ୍ୟ ତାକୁ ଧୀରେ ଧୀରେ ଜନମାନସରେ ଏକ ଅଖଣ୍ଡ ରାଜ୍ୟର ଅଧିବାସୀ କରାଇଥିଲା । ବର୍ଷ ବର୍ଷ ଧରି ଜନଶ୍ରୁତି ମାଧ୍ୟମରେ ଏବଂ ଖବର କାଗଜର ରିପୋର୍ଟର୍‌ମାନଙ୍କ ଅତିରଂଜିତ ବର୍ଣ୍ଣନା ଫଳରେ ଭୂମିକା ନିମ୍ନବର୍ଗର ବିଦ୍ରୋହୀରୂପେ ପ୍ରତିଷ୍ଠା ପାଇଗଲା ।

ଯୁଗ ଯୁଗ ଧରି ନିର୍ଯ୍ୟାତିତ ଓ ପଦଦଳିତ ଦରିଦ୍ର ଜନତା ତାଙ୍କ ଶ୍ରେଣୀର ଜଣେ ଯୁବକର ଅଶଙ୍କିତ ପଦକ୍ଷେପକୁ ଶ୍ରଦ୍ଧାର ସହିତ ନିରୀକ୍ଷଣ କରିବା ଆରମ୍ଭ କଲେ । ଏହାର ବଳେ ଜଣେ ଯେତେବେଳେ ଅବଦମିତ କାମନାକୁ ରୂପଦିଏ, କେତେଭଲ ଲାଗେ ଆମକୁ । ମୁଁ ସିନା ପାରିଲିନି, ମୋର ଜାତିଭାଇ ଜଣେ ତ ପାରିଲା ।

କ୍ଷମୀରଣା ହୋଇ ଉଠିଥିଲା ଏକ ପ୍ରତୀକ । ଯେଉଁଠି ଅତ୍ୟାଚାରର ଧୂଆଁ ଉଠୁଥିଲା, ସେଇଠି କ୍ଷମୀରଣା ଦେଖା ଦେଉଥିଲା ଜୁଲିଙ୍ଗ ଚକ୍ରବାତ୍ୟା ଭଳି । ଅଦ୍ଭୁତ ଶରୀର ଶକ୍ତି ଓ ମାନସିକ ଶକ୍ତିର ସଂଯୋଗ ତାକୁ ବିସ୍ମୟକର ବ୍ୟକ୍ତିତ୍ୱ ଦେଇଥିଲା ।

ଦରଦାମ୍‌ବୃଦ୍ଧି ସାଧାରଣଲୋକଙ୍କର ଦୈନନ୍ଦିନ ଜୀବନକୁ ବେଦନାମୟ କରିଦେଇଥିଲା । ସମାଜରେ ମୁଷ୍ଟିମେୟ ଲୋକ କୋଠାପରେ କୋଠାପିଟି ଚାଲିଥିଲେ । ବିଦେଶୀ ମଦ୍ୟ ଓ ବିଳାସ ସାମଗ୍ରୀ ପ୍ରଚୁର ପରିମାଣରେ ବଜାରରେ ମିଳୁଥିଲା ।

ସ୍ଥାନେ ସ୍ଥାନେ ଶ୍ରମିକ ଓ କୃଷକମାନଙ୍କର ସଙ୍ଗଠିତ ଆନ୍ଦୋଳନକୁ ରଙ୍ଗୀନ୍ ମୁନରେ ଚାପି ଦିଆଯାଉଥିଲା । ଦେଶର କଡ଼ା ଆଇନ୍‌ଗୁଡ଼ିକୁ ଗୁଣ୍ଡା ବଦମାସ ଶ୍ରେଣୀର ଲୋକଙ୍କ ବିରୁଦ୍ଧରେ ପ୍ରୟୋଗ ନ କରି ରାଜନୀତି ସଚେତନ ଲୋକଙ୍କ ଉପରେ ପ୍ରୟୋଗ କରାଯାଉଥିଲା ।

ଯୋଜନାର ବିପୁଳ ଅର୍ଥ ଲୁଣ୍ଠିତ କରି ଏକ ନିର୍ଦ୍ଦିଷ୍ଟ ଶ୍ରେଣୀ ଶକ୍ତିବାନ୍ ହୋଇ ଉଠିଥିଲେ । ସାଧାରଣ ଜନତା ଦରିଦ୍ରରୁ ଦରିଦ୍ରତର ହୋଇ ଚାଲିଥିଲା ।

ବିପ୍ଳବର ସମସ୍ତ ଉପାଦାନ ଥିବା ସତ୍ତ୍ୱେ ବିପ୍ଳବର ଧୂମଶିଖା କାହିଁକି ଆକାଶକୁ ଚାଳିଁଶିଆ କରିନଥିଲା, ସେ କଥା ଇତିହାସ ହିଁ କହିବ । ସମ୍ଭବତଃ ଏ ଦେଶର ଭାଗ୍ୟହୀନ ମାନବ ଦୁଃଖ ଦୁର୍ଦ୍ଦଶାକୁ ଏକନିର୍ଦ୍ଦିଷ୍ଟ ସାମାଜିକ ବ୍ୟବସ୍ଥାର ବିଷଫଳ ନ ଭାବି ଭାଗ୍ୟର ଅଲଂଘ୍ୟ ନିର୍ଦ୍ଦେଶ ବୋଲି ଗ୍ରହଣ କରିନେଇଥିଲା ।

ହ୍ୱମୀରିକାର ପ୍ରଭାବ ବୃଦ୍ଧି ସଙ୍ଗେ ସଙ୍ଗେ କ୍ଷମତାସୀନଦଳର ନେତାମାନେ ଚିନ୍ତିତ ହୋଇ ପଡ଼ିଥିଲେ । ହ୍ୱମୀରିକାର ବିନା ସାହାଯ୍ୟରେ ଆଗାମୀ ନିର୍ବାଚନରେ ଜୟଲାଭର ଆଶା ସେମାନଙ୍କର ସୁଦୂର ପରାହତଥିଲା ।

ହ୍ୱମୀରିକା ବିରୋଧୀ ଦଳମାନଙ୍କର ନିମନ୍ତ୍ରଣକୁ ମଧ୍ୟ ପ୍ରତ୍ୟାଖ୍ୟାନ କରିଥିଲା । ସେମାନଙ୍କ ମଧ୍ୟରେ ସାଧୁତାର ଅଭାବ ତାକୁ ବ୍ୟଥିତ କରିଥିଲା ।

ଜନତାର ରୋଷ ଏବଂ କ୍ଷୋଭ ଆନ୍ଦୋଳନ ମାଧ୍ୟମରେ ପ୍ରକାଶ ପାଇଥିଲା । ରାଜନୀତି ବାଲାଙ୍କୁ ବାଦ୍ ଦେଇ ଛାତ୍ର ଯୁବ ଆନ୍ଦୋଳନ ଦେଶରେ ଲହରାୟିତ ହେଉଥିଲା ।

ହ୍ୱମୀରିକା ଆଉ ମୁଁ ପ୍ରାୟ ସବୁ ଆନ୍ଦୋଳନ ସହିତ ଜଡ଼ିତ ହୋଇ ପଡ଼ିଥିଲୁ ।

ଏଥର କଲମ ଆଉ ଆଗକୁ ଯିବାକୁ ଇଚ୍ଛା କରୁନି, ଅଶ୍ରୁ ଆଉ ରୁଧିରର କରୁଣ ଇତିହାସ; ଲାଞ୍ଛନା ଓ ବିଶ୍ୱାସଘାତକତାର ଘୃଣ୍ୟ ଘଟଣା ସବୁ ମନେ ପଡ଼ିଗଲେ ହୃଦୟ ଭିତର ବିଦାରି ହୋଇଯାଉଛି । ମସ୍ତିଷ୍କ ଭିତରେ ବେଦନାର ଝଟ ତାର ଯାତ୍ରା ଆରମ୍ଭ କରି ଦେଉଛି ।

ମନ୍ଦିର, ମସଜିଦ୍, ଚର୍ଚ୍ଚ ଭିତରେ ଭଗବାନଙ୍କୁ କାହିଁକି ମଣିଷ ଉପାସନା କରୁଛି, ମୁଁ ବୁଝିପାରୁନି । ଏ ସୃଷ୍ଟିରେ ଚରମ ଅମଙ୍ଗଳକୁ ଯେ ଡାକି ଆଣିଛି, ସେହି ଦେବତାର ପାଦତଳେ ମଥାପିଟିବାପାଇଁ ଯେଉଁମାନଙ୍କର ଇଚ୍ଛାଅଛି, ସେମାନେ ସେଇଆ କରନ୍ତୁ । କିନ୍ତୁ ମୁଁ କ୍ରୀତଦାସ ଭଳି ସେ ଅତ୍ୟାଚାରୀ ଭଗବାନଙ୍କୁ ମାନି ପାରିବିନି ।

ହେ ମୌନ ଭଗବାନ ! କି ଅପରାଧ କରିଥିଲା ଫୁଲଭଳି ନିଷ୍ପାପ ହ୍ୱମୀରିକା, ଯା ଫଳରେ ତମମନରେ ସାମାନ୍ୟତମ ସହାନୁଭୂତି ବି ତା ପାଇଁ ରହିଲା ନି ? କି କ୍ଷତି ତମର କରିଥିଲା ଏ ଦେଶ, ଯା ଫଳରେ ତମେ ଦେଶର ସେହି ଚରମ ଦୁର୍ଦ୍ଦିନରେ ନୀରବ ରହିଗଲ ? ଯେଉଁ ଘୃଣ୍ୟ ମୁହୂର୍ତ୍ତରେ ଏଦେଶର ଶ୍ରେଷ୍ଠସନ୍ତାନଙ୍କୁ ପ୍ରତାରିତ କରି ଦିଆଗଲା, ସେତେବେଳେ ତମେ ଲୁଚିଥିଲ କେଉଁଠି ?

ସ୍ୱାଧୀନତାର ଦେବଜନ୍ମ ମାନବତାର ଦେବଜନ୍ମ । ସ୍ୱାଧୀନତାର ଅପମାନ ମଣିଷର ଅପମାନ । ତମ ଆସନ କ'ଣ ଥରି ଉଠିଲାନି ଭଗବାନ ସେହି କ୍ଷଣରେ ଯେତେବେଳେ ଦେଶର ଶାସନକର୍ତ୍ତାଙ୍କ ଗୁପ୍ତ କକ୍ଷ ଗର୍ଭର ଷଡ଼ଯନ୍ତ୍ରର ବାଷ୍ପାକ୍ତ ଧୂମରେ କ୍ଷୁବ୍ଧ ହୋଇ ଉଠିଥିଲା ?

ନା, ତମଠୁ ଏହା ଆଶା କରିବା ମୋ ପକ୍ଷରେ ଉଚିତ ହେଉନି । ତମେ ସେହି ଭ୍ରଷ୍ଟାଚାରୀମାନଙ୍କର ମନ୍ଦ ନେବ ନିଶ୍ଚୟ କାରଣ ସେମାନେ ହିଁ ତମ ମନ୍ଦିରଗୁଡ଼ିକରେ ପଇସା ଫୋପାଡ଼ି ପାରନ୍ତି । ସେମାନଙ୍କ ଦାନ ନେଇ ପଣ୍ଡା, ପୂଜାରୀମାନେ ସେମାନଙ୍କର କଲ୍ୟାଣ କାମନା କରି ତମର ଆରତି କରନ୍ତି ଓ ସେମାନଙ୍କର ପାପଲବ୍ଧ ଧନରେ ତମର ପୂଜା ଭୋଗ ଲାଗିଥାଏ ।

ପିଲାଦିନେ ମୁଁ ବହୁତ ଡିଟେକ୍ଟିଭ୍ ଉପନ୍ୟାସ ପଢ଼ିଥିଲି । ଅପରାଧୀ ଯେତେବେଳେ ଧରାପଡ଼ୁଥିଲା, ପୋଲିସ ଯେତେବେଳେ ହତ୍ୟାକାରୀକୁ ଆସ୍ତ କରୁଥିଲା; ମୋ ମନ ପରମ ସନ୍ତୋଷରେ ଭରି ଯାଉଥିଲା ।

ଯେତେବେଳେ ବଡ଼ ହେଲି, ଜାଣିପାରିଲି ଏ ସବୁ କେବଳ ମିଛ କଳ୍ପନା । ସମାଜର ସବୁଠାରୁ ବଡ଼ ଅପରାଧୀଙ୍କୁ ଧରିବାର ସାଧ୍ୟ କାହାର ନାହିଁ । ଏଇ ବଡ଼ ଅପରାଧୀମାନେ ପୋଲିସ, ମାଜିଷ୍ଟ୍ରେଟ୍, ସୈନ୍ୟବାହିନୀ, ସମସ୍ତଙ୍କର କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରନ୍ତି ।

ସ୍ୱୟଂ ପ୍ରଧାନମନ୍ତ୍ରୀ କିମ୍ବା ମୁଖ୍ୟମନ୍ତ୍ରୀ ଯେତେବେଳେ ଷଡ଼ଯନ୍ତ୍ରର ଜାଲ ବିସ୍ତାର କରନ୍ତି, ତାଙ୍କୁ ଧରିବାର ସାଧ୍ୟ କେଉଁ ବୀରପୁରୁଷର ରହିଛି ?

କେବେକେବେ ଗୋଟିଏ ଡିଟେକଟିଭ୍ ପଢ଼ିଛି, ଯେଉଁଠି ରାଜନୈତିକ ନେତା ଅପରାଧ କରିଚନ୍ତି ଓ ଧରାପଡ଼ିଚନ୍ତି । କିନ୍ତୁ ଯେଉଁଠି ଶାସନର ସର୍ବୋଚ୍ଚକର୍ତ୍ତା ଅପରାଧୀ ଏବଂ ପୋଲିସ ଓ ଗୁଇନ୍ଦା ବିଭାଗର ପ୍ରଧାନ କର୍ତ୍ତାମାନେ ଚକ୍ରାନ୍ତର ଉଦ୍ଭାବକ, ସେଠି ନିବାରଣର ଉପାୟ କାହିଁ ?

ଅଭାବ ଭିତରେ ସଂଗ୍ରାମ କରୁଥିଲୁ । ରକ୍ତକୁ ପୋଷ ପୋଷ ଢ଼ାଳି ଜନତାର ସେବା କରୁଥିଲୁ । ଆନ୍ଦୋଳନର ମଶାଲକୁ ଉଜ୍ଜ୍ୱଳ ରଖିବାପାଇଁ ନିଜର ସବୁ କିଛି ଦାନ କରିଦେବାକୁ ପ୍ରସ୍ତୁତ ହେଉଥିଲୁ । ଦେଶକୁ ଭଲ ପାଇବାର ନିଶା ସବୁ ବେଦନା, ସବୁ କଷ୍ଟକୁ ଭୁଲାଇ ଦେଉଥିଲା ।

ଯେଉଁମାନେ ସ୍ୱାଧୀନ ଭାରତର ତରୁଣ ସମାଜ ପୂର୍ଣ୍ଣ ରୂପେ ନଷ୍ଟ ହୋଇଯାଇଛି, ସେମାନେ କିଛି ଜାଣି ନାହାନ୍ତି । ଏ ଦେଶର ଶିଳ୍ପ ପ୍ରତିଷ୍ଠାରେ ସବୁବେଳେ ତ୍ୟାଗର ଅଖଣ୍ଡ ଆତ୍ମବଳିଦାନର ଭାବଧାରା ପ୍ରବାହିତ ହେଉଛି ।

ଏ ଦେଶର ଜନତା ମିଥ୍ୟାଶ୍ରୟୀ ନୁହେ । ଅନ୍ଧ ଭୟଙ୍କର ମୁହୂର୍ତ୍ତରେ ମଧ୍ୟ ତାର ବିବେକ ବିଲୁପ୍ତ ହୋଇଯାଇନି । ମାନବିକତାର ମହତ୍ପ୍ରେରଣା ଏ ଦେଶର ଗାଁର ନିରକ୍ଷର ମୂଲିଆ ବୁକୁରେ ସଞ୍ଚିତ ରହିଛି । ତା ନ ହେଲେ ସବୁ କିଛି ହରାଇବାକୁ ପ୍ରସ୍ତୁତ ହୋଇ ସେ ମୋହନ ଦାସ କରମଚାନ୍ଦ ଗାନ୍ଧୀର ଡାକରାକୁ ହଜମ କରି ପାରନ୍ତାନି ।

୧୯୪୭ର ସେହି ରକ୍ତାକ୍ତ ଦିନଗୁଡ଼ିକ । ଦିଲ୍ଲୀ ବତାସରେ କେବଳ ହା' ହୁତାଶ । ପଶ୍ଚିମ ପଞ୍ଜାବ ଖାଲି କରି ଆସିଚନ୍ତି, ହିନ୍ଦୁ ଓ ଶିଖ । ପଛରେ ଛାଡ଼ି ଆସିଚନ୍ତି ଚିରହରିତାଶ୍ୟମାନ ଶସ୍ୟକ୍ଷେତ, ଦୁଗ୍ଧବତୀ ଗାଈ, ବିଭବଭରା ଆବାସ । ସ୍ୱଚକ୍ଷୁରେ ସେମାନେ ଦେଖିଚନ୍ତି ମା' ଓ ଭଉଣୀର ନିର୍ମମ ଗଣଧର୍ଷଣ, ମୂର୍ଚ୍ଛିତ ହୋଇଚନ୍ତି ସ୍ନେହମୟୀ ନାରୀର ସ୍ତନଛେଦା ଆତତାୟୀର ବିଭତ୍ସ ଆନନ୍ଦଭରା ମୁଖ ଦେଖି ।

ସେମାନଙ୍କର ମନୁଷ୍ୟତ୍ୱକୁ ବଳି ଦେଇ ଆସିଚନ୍ତି ସେମାନେ ରାକ୍ଷସଠୁ ବି ନିଷ୍ଠୁର ହୋଇ ଉଠିଚି ସେମାନଙ୍କର ମନ । ନିଜଠାରୁ ଦୁର୍ବଳ, ନିରୀହ ମୁସଲମାନ ପରିବାରର ସର୍ବନାଶ କରିବାର କାମନା ସେମାନଙ୍କର ହୋଇ-ଉଠିଚି ସୁତୀବ୍ର ଅଦମ୍ୟ । ମୁସଲମାନ ମଧ୍ୟ କମ ଅତ୍ୟାଚାରିତ ହୋଇନି ଦିଲ୍ଲୀ, ପଞ୍ଜାବ ଓ ବିହାରରେ ।

ଭାରତର ଆତ୍ମା ମୋହନ ଦାସ ଗାନ୍ଧୀ ଡ଼ାକୁଚି ହିନ୍ଦୁ, ଶିଖ ଓ ମୁସଲମାନଙ୍କୁ ଅତୀତ ଭୁଲିବାପାଇଁ । ଆଖିରେ ଲୁହ ଓ ମନରେ କୋହ ନେଇ ସେମାନେ ଶୁଣୁଚନ୍ତି ସେଇ ବେଦନାଗ୍ରସ୍ତ ସ୍ୱର । ସାରା ଜଗତର ବିଷାଦ ସେଇ ସ୍ୱରରେ ଜମାଟ ବାନ୍ଧି ରହିଚି ।

ନା, ଅତୀତକୁ ସେମାନେ କ୍ଷମା କରିପାରିବେନି । ସେମାନଙ୍କର କୃପାଣ ତୃଷାର୍ତ୍ତ । ସେମାନଙ୍କର ହୃଦୟ ଅଶାନ୍ତ ।

ସଇତାନ୍ ପାରିଲାନି । ମଣିଷ ଜିତିଲା ଅତ୍ୟାଚାର ଜର୍ଜରିତ ହିନ୍ଦୁ ଶିଖ ଓ ମୁସଲମାନ ହାତ ମିଶାଇଲେ । ସେମାନେ ନିଜେ ଚକିତ ହୋଇଗଲେ

ଯେ ତାଙ୍କ ଭିତରେ ଏତେ ବଡ଼ ସ୍ନେହର ଧାରା ସମସ୍ତ କଲୁଷ ଭିତରେ ମଧ୍ୟ ଆତ୍ମଗୋପନ କରିଥିଲା ।

ଆଜି ଭାରତର ନେତା-ଶ୍ରେଣୀ ! ସମସ୍ତ ପ୍ରକାର ଜଘନ୍ୟ ପରମ୍ପରାର ଛିନ୍ନମୂଳ ଏଇ ସଇତାନର ଚେଲାମାନେ !! ସେମାନଙ୍କର ଅପରାଧର ସୀମା ନାହିଁ । ସେମାନଙ୍କର ପଶୁତ୍ୱର କଳନା ନାହିଁ ।

ଦେଶଲାଗି ସବୁକିଛୁ ଜଳାଞ୍ଜଳି ଦେଇଥିବା ତରୁଣମାନଙ୍କୁ ସେମାନେ ଶେଷ କରି ଦେଉଛନ୍ତି । ହଜାର ହଜାର ବିଶ୍ୱବିଦ୍ୟାଳୟର ଛାତ୍ରଙ୍କର ଜେଲ୍‌ର ଅନ୍ଧାର କୋଠରି ଭିତରେ ଜୀବନଦୀପ ଲିଭି ଯାଉଛି । ମୁଜାଫ୍ଫରପୁର, ଅଳକାନନ୍ଦ, ଚାଇବାସା, ଗୋପବନ୍ଧୁର ବଂଶଧରମାନେ ରକ୍ତ ଢ଼ାଳି ଦେଉଛନ୍ତି ନିର୍ଜନ ଦେଓଆରେ, ଶାଳବଣର ଜଙ୍ଗଲରେ, ପାହାଡ଼ୀ ନଦୀର ପଥର ଦାଢ଼ରେ ।

କୋରାପୁଟ-ଶ୍ରୀକାକୁଳମ୍‌ର ଗହନ ଅରଣ୍ୟ ସେ ଦୃଶ୍ୟ ଦେଖି ଶିହରି ଉଠିଛି । ଯୁଗ ଯୁଗ ଅତ୍ୟାଚାରରେ ମଥିତ ହୋଇଯାଇଥିବା ଆଦିବାସୀ ଗିରିର ନିର୍ଜନ ପ୍ରହରକୁ ଅଶୁଭ କରିଛି ।

ବନ୍ଧୁକ ଗର୍ଜି ଉଠିଛି । ସରକାରର କ୍ରୀତଦାସ ପୋଲିସ୍ ରକ୍ତମୁଖା ହୋଇଛି ।

ଭୁଲିପାରିବନି ଭାରତର ଇତିହାସ ସେଇ ଧ୍ୱଂସ ପଥର ତରୁଣମାନଙ୍କୁ । ସେମାନଙ୍କର ରକ୍ତକରଗାର ସାଧନା ଆଗାମୀ ଯୁଗର ଲେଖକକୁ ଯୋଗାଇବ ଖାଦ୍ୟ ଓ ବିପ୍ଳବୀକୁ ଯୋଗାଇବ ପ୍ରେରଣା ।

ହାୟ ! ସାମାନ୍ୟ ଆଭାସ ଆମେ ଯଦି ପାଇଥାନ୍ତୁ ନେତାମାନଙ୍କର ସେଇ ଚକ୍ରାନ୍ତ ସମ୍ପର୍କରେ ? ତାହେଲେ ଦେଶର ଇତିହାସ ଅନ୍ୟ ଏକ ଢଙ୍ଗରେ ଗଢ଼ା ହୋଇଥାନ୍ତା ।

ଦେଶର ଶ୍ରେଷ୍ଠ ମସ୍ତିଷ୍କ ସେଇ ଚକ୍ରାନ୍ତର ଯୋଜନା କରିଥିଲା । ଦେଶର ସର୍ବୋଚ୍ଚ ଶାସକ ସେଇ ଯୋଜନାକୁ ଆଶୀର୍ବାଦ ଦେଇଥିଲା । କ୍ଷମତା, ଧନ ଏବଂ ବୁଦ୍ଧିର ବିଚିତ୍ର ସଂଯୋଗ ଘଟିଥିଲା କେତେକ ଦେଶଭକ୍ତ ତରୁଣଙ୍କୁ ଚିରଦିନ ମୂକ କରିଦବାପାଇଁ ।

ଜେଲ୍‌ଖାନାର ଅନ୍ଧାରି କୋଠରିରେ ମୁଁ ପ୍ରଥମେ ସେ ଯୋଜନା ସମ୍ପର୍କରେ ଶୁଣିଥିଲି ଓ ସ୍ତବ୍ଧ ହୋଇ ଯାଇଥିଲି ।

ଯୋଜନାର ସୂତ୍ରଧର ଗର୍ବ ଓ ଅହ୍ଲାଦରେ ସମସ୍ତ ତଥ୍ୟ ମୋ ଆଗରେ ବାଢ଼ି ଦେଇଥିଲେ । କୌଣସି ଉପନ୍ୟାସଠାରୁ ବି ଆହୁରି ଚମତ୍କାର ଏକ ରହସ୍ୟ ମୋ ନିକଟରେ ତାର ସମସ୍ତ ଜଟିଳତା ନେଇ ଆତ୍ମପ୍ରକାଶ କରିଥିଲା ।

ମୁଁ ଏଥର ମୋ ଲେଖନୀ ସୃଜନ କରିବ ସେ ରହସ୍ୟମୟ କାହାଣୀକୁ ନେଇ । ତା ନହେଲେ ମୁଁ ଓ ସ୍ୱାମୀଜୀ କିଭଳି ଏଇ ଧ୍ୱଂସ ପରିବେଶକୁ ଚାଲିଆସିଲୁ, ତା ମୋ ଦେଶର ଜନସାଧାରଣଙ୍କଠାରେ ଅଜ୍ଞାତ ରହିଯିବ ।

ସ୍ୱାମୀଜୀଙ୍କର ଏବଂ ମୋର ମୃତ୍ୟୁ ସମ୍ବାଦ ଯେତେବେଳେ ପ୍ରଚାରିତ ହୋଇଥିବ, ସାରା ଦେଶ ନିଶ୍ଚୟ ସ୍ତବ୍ଧ ହୋଇଯାଇଥିବ । ପଞ୍ଜାବର ଶସ୍ୟକ୍ଷେତ୍ରରେ, କୋରାପୁଟର ଜଙ୍ଗଲରେ, କେରଳର ନାରିକେଳ କୁଞ୍ଜରେ ଦୁଃଖର ଏକ ପ୍ରକାଣ୍ଡ ଜୁଆର ଜନମାନସକୁ ପ୍ଲାବିତ ଓ ଅଶାନ୍ତ କରିଥିବ ।

କେବେକେବେ ମନେ ପଡ଼େ ପ୍ରିୟବନ୍ଧୁ ଗୌତମ ସିଂ, ରାଧାକୃଷ୍ଣନ୍ ଓ ୟୁସୁଫ୍ କଥା । ଅନ୍ୟାୟ ବିରୁଦ୍ଧରେ ଏମାନେ ଅଗ୍ନିଭଳି ଜଳୁଥିଲେ । ଜନତାକୁ ସଂଗଠିତ କରି ଏମାନେ ନିଖିଳ ଭାରତ ସ୍ତରର ଏକ ଆନ୍ଦୋଳନର ମୂଳଦୁଆ ପକାଇ ସାରିଥିଲେ ।

ନେତାର ମୃତ୍ୟୁ ସେମାନଙ୍କୁ ବ୍ୟଥିତ କରିଥିବ । ସେମାନଙ୍କୁ କିଛି ସମୟପାଇଁ ପଥର କରି ଦେଇଥିବ । ତାପରେ କ୍ଷମତାସୀନ କୁଚକ୍ରୀଗୋଷ୍ଠୀର ଅପପ୍ରଚାର ସେମାନଙ୍କୁ କିଂକର୍ତ୍ତବ୍ୟବିମୂଢ଼ କରି ଦେଇଥିବ ।

ଖବରକାଗଜରେ ଯେତେବେଳେ ସେମାନେ ଦେଖିଥିବେ ସେମାନଙ୍କର ପରମ ପ୍ରିୟ ନେତା ସ୍ୱାମୀଜୀଙ୍କର ପତ୍ନୀଙ୍କର ବିବୃତ୍ତି, ସେମାନଙ୍କର ହୃଦୟ ବିଦୀର୍ଣ୍ଣ ହୋଇଯାଇଥିବ ।

ଏ ଦୁଃଖରେ ମୁଁ କଟାଇଛି ସେଇ ଭୟଙ୍କର ଦିନଗୁଡ଼ିକ । ମୋର ଶକ୍ତି ନଥିଲା ସରକାରର ମିଥ୍ୟା ଜାଲ ଛିନ୍ନ କରିବାକୁ । ପାଗଳଭଳି କେବେ କେବେ ମୋ ମୁଣ୍ଡର ବାଳକୁ ଉପାଡ଼ୁଚି, ଛାତିକୁ ନଖରେ ବିଦାରୁଚି ।

ଅଃ ! ସାମାନ୍ୟ ପଦ ସୁବିଧା ଥାଇ ମୋର ପ୍ରିୟ ଯୁବବନ୍ଧୁମାନଙ୍କୁ କହୁଛନ୍ତି, 'ନାଁରେ ସରକାରୀ ପ୍ରସ୍ତର ମିଥ୍ୟା, ଗର୍ଜନା ମିଥ୍ୟା' । ପ୍ରତାପ ସିଂଙ୍କ ଭଳି ଅନ୍ତିମ ମୁହୂର୍ତ୍ତପର୍ଯ୍ୟନ୍ତ ଅତ୍ୟାଚାରିତ ଶ୍ରମିକ ବନ୍ଧୁ ରହିଛି ତାର ଆଦର୍ଶ ପ୍ରତି, ମୂଲ୍ୟବୋଧ ପ୍ରତି ।

ୟୁସୁଫ୍ ! ଗୌତମ ! ରାମକୃଷ୍ଣ ! ତମେ କଣ ପ୍ରତାରଣାକୁ ସତ୍ୟ ବୋଲି ଗ୍ରହଣ କରି ଅତତାୟୀ ନେତାମାନଙ୍କୁ ସମର୍ଥନ କରିବ ? ମୋ ଜନନୀର ଦାବୀଗୁଡ଼ିକୁ ସୁରକ୍ଷିତ କରିବାକୁ ସଂକଳ୍ପ ନେଇଥିଲ ତମେମାନେ । ତମ ଦୃଷ୍ଟିରେ ମୁଁ ପଢ଼ିଥିଲି ଚରମ ତ୍ୟାଗର ବାର୍ତ୍ତା, ତମ ଆଖିରେ ମୁଁ ଦେଖିଥିଲି ସଂଗ୍ରାମର ଉମଙ୍ଗ ।

ସେଦିନ ଗୁଇନ୍ଦା ବିଭାଗ ମୁଖ୍ୟ ମୋ ଆଗରେ କହିଗଲେ 'ତମେ ହାରିଗଲ ସାକେତ ଶର୍ମା । ଏଣିକି ଆମେ ତାଙ୍କ ସ୍ୱାକ୍ଷର ଜାଲ କରି ଏକ ବିବୃତ୍ତି ଛପାଇଦେବୁ ଓ ତାର ମାଧ୍ୟମରେ ତମର ପ୍ରିୟ ଶିଷ୍ୟ ଗୌତମ, ୟୁସୁଫ୍ ଓ ରାମକୃଷ୍ଣଙ୍କୁ ସରକାରୀ ଦଳକୁ ଟାଣି ଆଣିବୁ ।'

ମୁଁ ବିଶ୍ୱାସ କରୁଛି ସେମାନେ ସବୁ କରିପାରିବେ କାରଣ ଶ୍ରମିକଙ୍କର ନ୍ନୀ ତେଜ କାଳନାଗୁଣୀଟି ସେମାନଙ୍କର ଥୋପ ଗିଳି ସାରିଛି ।'

ଅଗ୍ନିପୁତ୍ରମାନେ ! ତମେମାନେ କ'ଣ କଲ ? ଆମର ଆଶାର ଦୀପ୍ତ ମଶାଲ ଜଳୁଥିଲା ତମକୁ ନେଇ । ମୁଁ କିଛି ଜାଣିପାରୁନି । ମୁଁ କିଛି ବୁଝି ପାରୁନି । ଗତ ପାଞ୍ଚବର୍ଷରେ ଏ ଦେଶ କେଉଁଆଡ଼େ ଗତି କରିଛି, ମୋତେ ଜାଣିବାକୁ ଦିଆଯାଉନି ।

ଏବେ ମଧ୍ୟ କ'ଣ ସେଇ ନିରଙ୍କୁଶ ଶାସନ ଏ ଦେଶରେ ଚାଲିଛି ? ଯେଉଁମାନେ ଶ୍ରମିକଙ୍କର ପବିତ୍ର ରକ୍ତରେ ହାତ କଳୁଷିତ କରିଛନ୍ତି, ଯେଉଁମାନେ ମୋଭଳି ଜଣେ ଜଣେ ନିରପରାଧକୁ ଯମଯନ୍ତ୍ରଣା ଦେଇ ନିଃସଙ୍ଗ କୋଠରିର ଅଧିବାସୀ କରାଇଛନ୍ତି; ସେମାନେ ଏବେ ମଧ୍ୟ କ'ଣ ଏ ଦେଶ ଶାସନ କରୁଛନ୍ତି ?

ନିଶ୍ଚୟ ଶାସନ କରୁଥିବେ । ତା ନହେଲେ ଏ କାରାଗାରର ଲୌହ କବାଟ ସଶବ୍ଦରେ ଖୋଲି ଯାଇଥାନ୍ତା ।

କହିଥିବା କଥା ଏକ ଧୂଆଁ ବାଣ ? ସେମାନେ କ'ଣ ବିଶ୍ୱାସ କରିପାରିଲେ ଏଭଳି ନରହନ୍ତା ନେତାମାନଙ୍କୁ ଆମେ ଆଶୀର୍ବାଦ ଦେବୁ ?

ଗୌତମ, ରାମକୃଷ୍ଣନ୍, ୟୁସୁଫ୍ ଯଦି ସାମାନ୍ୟତମ ସନ୍ଦେହରେ ଖାଲି ଘୋଷଣା କରିଥିବେ, ତେବେ ନିଶ୍ଚୟ ଦେଶର ଶାସନ ବଦଳିଯିବ । କୋଟିକୋଟି ଲୋକଙ୍କ ମଧ୍ୟରେ ଆମେ ପାଇଥିଲୁ ତିନି ଜଣଙ୍କୁ ଯାହାଙ୍କୁ କୁହାଯାଇପାରେ ଶାଣିତ ଇସ୍ପାତ । ପ୍ରଚଣ୍ଡ ଧୀଶକ୍ତି ସହିତ ଅସାଧାରଣ ଚରିତ୍ରର ଅଧିକାରୀ ଏଇ ତିନିଜଣ ଥିଲେ ଆମର ନୟନର ମଣି ।

ହମୀରଜୀ ବହୁବାର କହିଥିଲେ, 'ଶର୍ମା, ଏଥର ଆଉ ଭୟ ନାହିଁ । ଆମେ ପାଇଛେ କେତୋଟି ରତ୍ନକୁ । ଭାରତମାତାର ଦୁଃଖ ଦୂର କରିପାରିବେ ନିଶ୍ଚୟ, ଏଇମାନେ ।'

କିଏ ମୋତେ କହିବ ଦେଶର ବର୍ତ୍ତମାନ ଅବସ୍ଥା ସମ୍ପର୍କରେ । ମୋର ପ୍ରବଳ ସନ୍ଦେହ ଯେ ଏ ସମସ୍ତ ସମ୍ପର୍କରେ ସେ ଧୂରନ୍ଧର ମତ । ମୁଁ କୌଣସି ପ୍ରଶ୍ନ କଲେ ସେ ମୁହଁରେ ଆଙ୍ଗୁଳି ରଖି ସୂଚନା ଦିଏ ଯେ ସେ ଏ ବିଷୟରେ କୌଣସି ଉତ୍ତର ଦେବନି ।

ହଠାତ୍ ମନେ ପଡ଼ିଗଲା ସର୍ବଜୟାର କଥା । ଅତୀତରେ ଥରେ ଦେଖା ହୋଇଥିଲା ତା ସହିତ କଲିକତାରେ ।

ସେଠାକାର ଏକ ଜନବହୁଳ ସହରର ଯୋଗାଡେଇ ଫେରି ଆସିଥିଲି ଏକ ଶ୍ରମିକ ବସ୍ତିକୁ ଶ୍ରମିକ ନେତାଙ୍କ ସହ ଆଲୋଚନା କରିବାପାଇଁ । ହଠାତ୍ କିଏ ଜଣେ ଖବର ଦେଲା ଯେ ଜଣେ ମହିଳା ମୋ ସହିତ ଦେଖା କରିବାପାଇଁ ଆସିଛନ୍ତି । ମୁଁ ଆଶ୍ଚର୍ଯ୍ୟ ହେଲି କିନ୍ତୁ ସମ୍ମତି ଦେଇଥିଲି । ତାପରେ ମୋ ସମ୍ମୁଖରେ ଦଣ୍ଡାୟମାନ ହେଲା ସର୍ବଜୟା ।

ତାର ପୂର୍ବର ରୂପ ମଳିନ ପଡ଼ିଯାଇଛି ମାତ୍ର ମୁଖରେ ଲାଗି ରହିଛି ତୃପ୍ତିର ହସ ।

କହିଲା, 'ହମୀରଜୀଙ୍କୁ କହିଦେବେ ମୁଁ ଭଗବାନଙ୍କ ପାଖରେ ପ୍ରାର୍ଥନା କରୁଛି ସେ ଚିରଜୀବୀ ହୁଅନ୍ତୁ । ସେ ବହୁତ କିଛି ଦେଶପାଇଁ ଦେଇଛନ୍ତି । ନିଜ

ଦ୍ରାବେକୁ ଭପନ୍ଧ କରି ମୋଟେ' ସର୍ବଜୟା ଆଖିରୁ ଝରଣା ଆକାରରେ ଲୁହ ବହି ଯାଇଥିଲା ।

କିଛିକ୍ଷଣ ନୀରବତା ପରେ ନିଜକୁ ସମ୍ଭାଳି ସେ କହିଥିଲା, 'ଶ୍ରମିକ ମହଲରେ ତାଙ୍କର ବିଷୟ ବହୁତ ଆଲୋଚନା ହୁଏ ।'

ସର୍ବଜୟା ତାର ଇତିହାସ କହିଥିଲା । ସେ ଇତିହାସ କାରୁଣ୍ୟ, ଅତ୍ୟାଚାର ଓ ମାନବିକତାର ଇତିହାସ । ଏ ଦେଶର ଆଇନରକ୍ଷକ ଓ ନେତାମାନେ ସର୍ବଜୟା ଉପରେ ତାଙ୍କର ଅଧିକାର ସାବ୍ୟସ୍ତ କରିଥିଲେ । କଳା ଅପରାଧୀଙ୍କ କବଳରୁ ସେ ରକ୍ଷାହୋଇ ଦେଶର ଧବଳ ଅପରାଧୀଙ୍କ ହାତରେ ପଡିଥିଲା । ବହୁ କଷ୍ଟରେ ସେ ଆପଣାକୁ ମୁକ୍ତ କରିଥିଲା । ତାପରେ ସେ ଏକ ପୁରୁଷର ସନ୍ଧାନ ପାଇଥିଲା ଯାହା ଚେହେରା କୁତ୍ସିତ ହେଲେ ବି ଅନ୍ତର ସର୍ବଦା ଥିଲା ସ୍ନେହଶୀଳ । ସେହି କୁଦର୍ଶନ ପୁରୁଷର ଜାୟା ହୋଇ ସେ ବର୍ତ୍ତମାନ ସୁଖୀ ।

ଯାହା ନାଁକୁ ଲେଖି କଳମ କଳଂକିତ କରିବନି ଭାବୁଥିଲି, ଏଥର ତାକୁ ଏଡ଼ାଇବା ସମ୍ଭବ ହୋଇପାରୁନି । ସେଇ କଳା ନାଗୁଣୀ ଶ୍ରେଷ୍ଠ ସନ୍ତାନର ସେବାରୁ ଦେଶକୁ ବଂଚିତ କରୁଥିଲା । ନିର୍ଲଜ୍ଜ ପ୍ରବଞ୍ଚିତ ଦେଶର କୁଶାସକ ଗୋଷ୍ଠିର ସର୍ବଶ୍ରେଷ୍ଠ ଅସ୍ତ୍ର ହିସାବରେ ସେ କାମ କରିଥିଲା ।

ଗୌତମ ପୁଷ୍ପ, ରାମ କୃଷ୍ଣନ ! ତମେମାନେ କ'ଣ ମେନକା ଭୂମ୍ବାନଙ୍କ ବିଶ୍ୱାସଘାତକତାର ଚକ୍ରାନ୍ତକୁ ବୁଝିପାରୁଥିବ ? ତମର ପ୍ରିୟ ନେତା କ୍ୱମୀରକାର ନାଁ ନେଇ ସେ ତମ ପାଇଁ ଯେଉଁ ଜାଲ ବିଚ୍ଛାଇଥିବ, ତାକୁ କ'ଣ ତମେ ଛିନ୍ନ କରିପାରିଥିବ ?

ମାୟାବିନୀ ଯେତେବେଳେ ଦେଶର କୁଶାସକଙ୍କ ସହ ହାତ ମିଶାଇ ଚରମଭୋଗରେ ଧନ ଲୁଟାଉଥିଲା, ନିଜର ବୁଦ୍ଧିକୁ ନେଇ ଗର୍ବ କରୁଥିଲା ତାର ଶକ୍ତିକୁ ଶାସକ ଗୋଷ୍ଠୀର ଭୋଗରେ ଲଗାଉଥିଲା; ଅହଂକାରୀ ଉଚ୍ଚପଦସ୍ଥ କର୍ମଚାରୀମାନେ ମୋ ନିକଟରେ ତାର ସମସ୍ତ ରହସ୍ୟ ଖୋଲି ଦେଇଥିଲେ । ସେଇ ଚକ୍ରାନ୍ତକାରିଣୀର ସାହାଯ୍ୟକର୍ତ୍ତାମାନଙ୍କର ଅଟ୍ଟହାସ ଏବେ ବି ମୋର ହୃତ୍କମ୍ପ ଜାତ କରୁଛି । ସବୁ କଥା ଖୋଲି ଦେଇ ସେମାନେ

ମୋତେ କହୁଥିଲେ, 'ଶର୍ମା, ଆମେ ଜାଣୁ ଆପଣ ବିଶ୍ୱବିଦ୍ୟାଳୟର ଶ୍ରେଷ୍ଠ ଛାତ୍ର, କିନ୍ତୁ ଆପଣ ବି ମାନିବେ ବୁଦ୍ଧିର ଖେଳରେ ଆପଣଙ୍କୁ ଆମେ ହରାଇ ଦେଇଛୁ ।' ବୁଦ୍ଧିକୁ ବିକି ଦେଇଥିବା ସେଇ ସଇତାନ୍ ଦୂତମାନେ କ'ଣ ବା ବୁଝିବେ ମୋର ମନର ପ୍ରତିକ୍ରିୟା । ମୋର ମାନସିକ ଯନ୍ତ୍ରଣା ଉପଭୋଗ କରୁକରୁ ସେମାନେ କହୁଥିଲେ, 'ପୃଥିବୀର କୌଣସି ବ୍ୟକ୍ତି ଆପଣଙ୍କୁ ଏ ନିରନ୍ଧ୍ର କୋଠରୀରୁ ମୁକ୍ତ କରିପାରିବେନି ଶର୍ମା । ତେଣୁ ଆମେ ଗର୍ବଭରେ ଆପଣଙ୍କୁ ଏ ଦେଶର ଶାସକଙ୍କର ଚରମ ଉଦ୍ଦେଶ୍ୟର ଗନ୍ତାଘର ଦେଖାଇ ଦେଇ ପାରିଲୁ ।'

ବର୍ଷ ବର୍ଷ ଧରି ନିରାଶା ମୋତେ ଯନ୍ତ୍ରଣା ଦେଇଛି । କବିବର ସେଲିଙ୍କର ପ୍ରୋମିଥିୟସ୍ ଅନ୍‌ବାଉଣ୍ଡର୍ ପ୍ରସିଦ୍ଧ ଉକ୍ତି ସବୁ ମନେ ପକାଇ ନିଜକୁ ସାହାସ ଦେଉଛି ।

To suffer woes which Hope thinks infinite,
To forgive wrongs darker than death or night
To defy power which seems omnpiotent.

ଆଶା ଯାହାକୁ ଅସୀମ ମଣେ, ସେ ଭଳି ଦୁଃଖକୁ ସହ୍ୟ କରିବ ।
ମୃତ୍ୟୁ କିମ୍ବା ରାତିଠାରୁ ଅଧିକ କୃଷ୍ଣ ଛିଦ୍ରକୁ କ୍ଷମା କରିବ ।
ସର୍ବଶକ୍ତିମାନ କ୍ଷମତା ପାଇଁରେ ବିଦ୍ରୋହ ପତାକା ଟେକି ଧରିବ ।

ନିଃସଙ୍ଗ କୋଠରୀ-ବାସଠାରୁ ଯନ୍ତ୍ରଣାଦାୟକ ଆଉ କିଛି ନାହିଁ । ମୁଁ ଭାବୁଥିଲି ମୁଁ ନିଶ୍ଚୟ ପାଗଳ ହୋଇଯିବି । କିନ୍ତୁ ପ୍ରଥମ କେତେମାସ ପରେ ମୋର ମାଲିକମାନଙ୍କ ମନରେ ସମ୍ଭବତଃ ଦୟାର ଉଦ୍ରେକ ହୋଇଛି । ସେମାନେ ମୋତେ ଲଣ୍ଠନ ଓ ବହି ଯୋଗାଇ ଦେଇଚନ୍ତି ।

ମୋ ଚେହେରା କେମିତି ହୋଇଛି ? ମୁଁ ଏତିକି ଜାଣିପାରିଚି ଯୁବକ ଅବସ୍ଥାରେ ମୋର ବାଳ ସବୁ ଧଳା ହୋଇଯାଇଛି ଓ ମୋର ସବୁ ଚମ ଲୋସୁଡ଼ା ହୋଇଯାଇଛି । ଅସମୟ ବୃଦ୍ଧତ୍ୱ ଠିକ୍ ଯଯାତିଙ୍କୁ ଆକ୍ରମଣ କଲାଭଳି ମୋତେ ଆକ୍ରମଣ କରିଛି ।

ପ୍ରଥମେ ପ୍ରଥମେ ମୁଁ ମୃତ୍ୟୁକୁ ବହୁତ ଆଦରରେ ଡାକୁଥିଲି । ଏ ବାରମାସ ଯନ୍ତ୍ରଣା ଅପେକ୍ଷା ମୃତ୍ୟୁ ମୋତେ ଲୋଭନୀୟ ମନେ ହେଉଥିଲା ।

କିନ୍ତୁ ଆଜ ମୋର କାମ ଅସମାପ୍ତ ରଖି ମୁଁ ମୃତ୍ୟୁକୁ ସ୍ୱାଗତ କରିପାରିବିନି ।

ଏଥର ମୁଁ ସେହି ନାରୀଟିର ସମ୍ପର୍କରେ ଲେଖିବି ଯେ ସାରା ଦେଶରେ ଅନ୍ଧାରକୁ ନିମନ୍ତ୍ରଣ କରିଛି । ଶାସକଦଳର ଗୁପ୍ତଚର ସେହି ନାରୀଟିର ଜୀବନୀ ସମ୍ପର୍କରେ କୌଣସି ତଥ୍ୟ ମୋର ଅଜ୍ଞାତ ନାହିଁ । ନିଜ ଯୋଜନାର ସାର୍ଥକତାର ଆନନ୍ଦରେ ମୋର ଯନ୍ତ୍ରଣାଦାତାମାନେ ମୋତେ ସବୁ ବିଷୟ କହିଦେଇଚନ୍ତି ।

ଗାନ୍ଧୀଙ୍କ ଭକ୍ତ ଭଗବାନଙ୍କ ମଙ୍ଗଳପ୍ରଦ ବ୍ୟକ୍ତିତ୍ୱ ଉପରେ ମୋର ତିଳାର୍ଦ୍ଧ ବିଶ୍ୱାସ ନାହିଁ । ଯଦି ଥାଆନ୍ତା, ତେବେ ମୁଁ କେବଳ ଗୋଟିଏ କାମନା ତାଙ୍କ ଗୁହାରି ପୁସ୍ତିକାରେ ଲିପିବଦ୍ଧ କରନ୍ତି । ତା ହେଉଛି ମୋର ଲେଖାର ପରିସମାପ୍ତି ନକରି ମୁଁ ପାଦପୂର୍ବେ ଚକ୍ରରଜର ସମ୍ମୁଖୀନ ହେବାକୁ ଚାହେଁନା । ଦେବବାଳା ଉଦାସ । ସୃଷ୍ଟିର ସମସ୍ତ ମାଧୁରିମା ଦେଇ ଯେଉଁ ରୂପକୁ ଗଢ଼ା ଯାଇଥିଲା ସେ ରୂପରେ ଏତେ ବିଷ ଆସିଲା କେଉଁଠୁ ?

ତମ-ସତ୍ତ୍ୱର ଯବେ ଦେଖାଦେବ ଦେବବାଳା । ସେ ସୂତ୍ରରେ ତମେ ମୋର ଅନୁସନ୍ଧାନୀ ଦୃଷ୍ଟିକୁ ଫାଙ୍କି ଦେଇ ପାରିବନି । ଯେଉଁଠି ମୁଁ ତୁମକୁ ପ୍ରଶ୍ନପଚାରିବି, ଯେତେବର୍ଷ ପରେ ହେଲେ ବି ପଚାରିବି, ଶ୍ରୀମତୀ ତମର କ'ଣ ଛଳ କରିଥିଲ ?

କ'ଣ ତମର ଅଭାବ ଥିଲା ଦେବବାଳା ? କଲିକତା ବିଶ୍ୱବିଦ୍ୟାଳୟର ସ୍ୱର୍ଣ୍ଣ ପଦକଧାରିଣୀ ଥିଲ ତୁମେ । ବକ୍ତୃତାର ଅଙ୍ଗନରେ ତମେ ଯେତେବେଳେ ଦଣ୍ଡାୟମାନ ହଉଥିଲ, ବିରାଟ ହଲ୍‌ର ନିସ୍ତବ୍ଧତା ଭୁଲି ଯାଉଥିଲ । ସାମ୍ରାଜ୍ଞୀର ରୂପକୁ ଧିକ୍କାର କରୁଥିବା ତନୁଶ୍ରୀ, ଆମ ମଣିଷର ମସ୍ତିଷ୍କକୁ ଘୂରାଇଦେବା ବାକ୍‌ପଟୁତା, ପ୍ରଚଣ୍ଡ ଧୀଶକ୍ତି; ଏ ସମସ୍ତ ଦେଇ ସ୍ରଷ୍ଟା ପଠାଇଥିଲେ ତମକୁ କ'ଣ ଏ ଦେଶରେ ଆଲୋକର ଉତ୍ପତ୍ତିକୁ ଢାଙ୍କିଦେବାକୁ ।

ତାହିଁକି ତମ ନାମର ଅମର୍ଯ୍ୟାଦା କ'ଲ ତମେ ? ଶ୍ରୀମତୀ ତମକୁ ଅନାଦର କରି ନଥିଲ । ଶ୍ରୀମତୀଙ୍କର ଅନୁଜରୂପେ ମୁଁ ତମକୁ ଭଲପାଉଥିଲି । ତମର ପ୍ରତ୍ୟେକ ଆଜ୍ଞା ଆମ ପକ୍ଷରେ ଶିରୋଧାର୍ଯ୍ୟ ଥିଲା ।

କ୍ଷମତାର ନିଶା ତମର କ'ଣ ଏତେ ତୀବ୍ର ଥିଲା ? ତମର ତ୍ୟାଗ ତ ସାରା ଭାରତ ବର୍ଷର ଜନସାଧାରଣଙ୍କର ଶ୍ରଦ୍ଧା ଆକର୍ଷଣ କରିଥିଲା । କ୍ଷମତା ତ ତମ ହାତମୁଠାକୁ ଚାଲି ଆସିଥାନ୍ତା ।

ବିଶ୍ୱାସର ଅମୃତଭାଣ୍ଡକୁ କାହିଁକି ଦୂଷିତ କଲ ତମେ ନାରୀ ? ତମଭଳି ଛଳନାମୟୀର ବିକୃତ ରୂପ ଜଣାପଡ଼ିଲା ପରେ ଦୁନିଆରେ ଯଦି ବିଶ୍ୱାସର ଧାରା ଶୁଷ୍କ ହୋଇଯାଏ, ତେବେ ସେ ବିପର୍ଯ୍ୟୟ ପାଇଁ ତମେ କ'ଣ ଦାୟୀ ହେବନି ?

ସ୍ୱାମୀଜୀଙ୍କର କି ବିରାଟ ସ୍ୱପ୍ନକୁ ଧ୍ୱଂସ କରିଦେଲ ତୁମେ ? ଆମେ ନିଜ ପାଇଁ କିଛି ଚାହୁଁ ନଥିଲୁ । ସ୍ୱାଧୀନ ଭାରତ ବର୍ଷକୁ ଯେଉଁମାନେ ଷାଉର ଦେଶରେ ପରିଣତ କରିଛନ୍ତି, ଆମେ କେବଳ ସେଇମାନଙ୍କ ପତନ ଚାହୁଁଥିଲୁ ।

ଗାଁର କିଶୋରୀ ଯେତେବେଳେ ପାଣିମାଠିଆଏ ପାଇଁ ପାଞ୍ଚମାଇଲବାଟ ଖରାରେ ଚାଲୁଥିଲା, ଏଇ ଦେଶର ପ୍ରଧାନମନ୍ତ୍ରୀ ଏକ ଘଣ୍ଟା ରାଜଗଙ୍ଗପୁରରେ ରହିବେ ବୋଲି ସେଠାରେ ବାଥ୍‌ରୁମରେ ମୋଜାଇକ୍‌ର ବିରାଟ ସନ୍ତରଣ କୁଣ୍ଡ ତିଆରି କରାଯାଇଥିଲା । ଗୋଟିଏ ପଟେ ଫାଇଭଷ୍ଟାର ହୋଟେଲ୍‌ର ବିଳାସର ଉଲଙ୍ଗ ନୃତ୍ୟ, ଅନ୍ୟପଟେ ଦାରିଦ୍ର୍ୟର ବୀଭତ୍ସ କଦାକାର ପ୍ରେତର ଅଟ୍ଟହାସ ଆମକୁ ପୀଡ଼ିତ କରୁଥିଲା ।

ଏ ଦେଶରେ ରାମମନୋହର ଲୋହିଆ ବୋଲି ଜଣେ ଲୋକ ଜନ୍ମ ହୋଇଥିଲେ ଯେ ମଣିଷବୁହା ଯାନରେ କୌଣସି ସ୍ଥାନକୁ ଯିବାକୁ ପସନ୍ଦ କରୁନଥିଲେ । ସେ ଲେଖିଥିଲେ ଖଣ୍ଡିଏ ବହି 'ଦିନକୁ ୨୫,୦୦୦ଟଙ୍କା' ସେ ଦର୍ଶାଇଥିଲେ ଯେ ଭାରତ ଭଳି ଦରିଦ୍ର ଦେଶରେ ପ୍ରଧାନମନ୍ତ୍ରୀଙ୍କର ଦୈନନ୍ଦିନ ଖର୍ଚ୍ଚ ସେତେବେଳେ ଥିଲା ଦିନକୁ ପଚିଶ ହଜାର ଟଙ୍କା । ଭାରତର ଏଇ ତପସ୍ୱୀ ଆତ୍ମାଟିକୁ ଖୋସାମୋଦିଆମାନେ ପାଗଳ କହୁଥିଲେ । ହଁ, ପାଗଳ ଏ ମାଟିରେ କିଏ ନୁହେଁ ଯେ ? ସକ୍ରେଟିସ, ଗାନ୍ଧିଙ୍କୁ ତ ପାଗଳ ଆଖ୍ୟାରେ ଭୂଷିତ କରାଯାଇଥିଲା ।

ଦରିଦ୍ର ଦେଶରେ କୋଟିକୋଟି ଟଙ୍କାର ବିଳାସ ବ୍ୟବସ୍ଥା ଆମକୁ ଦୃଷ୍ଟିକଟୁ ଜଣାଯାଉଥିଲା । କଳାଟଙ୍କାର ସହାୟତାରେ ନିର୍ବାଚନ ଜିଣିବାପାଇଁ

ଚଳାନ୍ତ କରୁଥିବା ଏକ ଅପରାଧୀଗୋଷ୍ଠିକୁ ଆମେ ବିରୋଧ କରୁଥିଲୁ ।

ଶତ ଶତ ଯୁବକ ଆମ ସାଥିରେ ଥିଲେ, ଯେଉଁମାନେ ବଡ଼ ଧନକଷ୍ଟ ପାଇପାରିଥାନ୍ତେ । ସେମାନେ ଚଷୀକାରର ଆଖିରେ ଲୁହଦେଖି ଦୁଃଖ ସନ୍ତ ପାଉଥିଲେ, କାରଣ ସେମାନେ ଭାରତମାତାର ଆଖିର ଲୁହ ପୋଛିବାକୁ ସଙ୍କଳ୍ପ କରିଥିଲେ ।

ଗୌତମ ସିଂକୁ ତମେ ତ ଜାଣିଚ ଦେବଦାଳା ? ଏକ ସମ୍ଭ୍ରାନ୍ତ ପରିବାରର ଏଇ ଯୁବକଟି ତାର ସର୍ବସ୍ୱ ଜାତିପାଇଁ ସ୍ୱାହା କରି ଦେଇଥିଲା । ସୁଟିର ଗୋଟିଏ ସହରରେ ହିନ୍ଦୁ ମୁସଲମାନ ଦଙ୍ଗାବେଳେ ତାକୁ ଜଣେ ହିନ୍ଦୁ ଯୁବକ ମୁସଲମାନ ସମର୍ଥକ କହି ଛୁରିରେ ଆଘାତ କରିଥିଲା ।

ଆଉ ଯୁସୁଫ୍ ! କାଶ୍ମୀରର ହାଥିରେ ଗୁଳିଚଳ ବୁଲୁଥିବା ଏଇ ତରୁଣଟି କ'ଣ କମ ଅସୁବିଧାର ସାମନା କରିଚି ? ଦେଶଭକ୍ତ ଯୁସୁଫ୍‌କୁ ସରକାର 'ପାକିସ୍ଥାନ ଦଲାଲ୍' କହୁଚନ୍ତି । ଧର୍ମାନ୍ଧ ମୁଲ୍ଲାମାନେ ଯୁସୁଫ୍ ବିରୁଦ୍ଧରେ ମସଜିଦ୍‌ରେ ଭାଷଣ ଦେଇଚନ୍ତି । ମାନବବାଦୀ ଯୁସୁଫ୍ ଭୀଷଣ ପରିସ୍ଥିତିରେ ସମ୍ମୁଖୀନହୋଇ ସବୁଗୋଷ୍ଠୀର ମତାନ୍ଧ ବ୍ୟକ୍ତିଙ୍କର କ୍ରୋଧର ସମ୍ମୁଖୀନ ହୋଇଛି ।

ତାମିଲନାଡୁର ରାମକୃଷ୍ଣନ୍ ଆପ୍ପାର ! ଏଇ ଯୁବକଟି କଠିନ ପ୍ରଶାସନିକ ନିର୍ବାଚନ ପରୀକ୍ଷାରେ ଭାରତରେ ସର୍ବୋଚ୍ଚ ସ୍ଥାନ ହାସଲ କରିଥିଲା । ମାନ୍ଦ୍ରାଜର ଏକ ସାଧାରଣ ପରିବାରରେ ସେ କୋଳପୂର୍ଣ୍ଣ ଆସିଥିଲା । ଗରିବ ଜନର ଦୁଃଖରେ ଅଭିଭୂତ ହୋଇ ସେ ଆମ ସହିତ ହାତ ମିଳାଇଲା । ସେ ଦିନଠୁ ସେ ମୁହୂର୍ତ୍ତକ ପାଇଁ ସୁଦ୍ଧା ପଛକଥା ଚିନ୍ତା କରିନ ।

କବି ରଜପୁ ବଡ଼ୁଆ, ସାହିତ୍ୟିକ ନୀଳରତନ ବାନର୍ଜୀ ।

କେତେଜଣଙ୍କ ନାଁ କହିବି, ପ୍ରତ୍ୟେକେ ଗୋଟିଏ ଗୋଟିଏ ସୁନ୍ଦର କୁସୁମ ଯାର ସୌନ୍ଦର୍ଯ୍ୟ ଓ ସୌରଭ ଦେଶରେ ଉଲ୍ଲାସ ଓ ଆଶାର ବାତାବରଣ ଖେଳାଇଛି ।

କ'ଣ କଲ ତମେ ଦେବବାଳା ? ସାରା ଦେଶରେ ତମେ ଭ୍ରଷ୍ଟାଚାରୀଙ୍କୁ ପୃଷ୍ଠପୋଷକ ଦେଇଦେଲ ।

ମୋର ଦୁଃଖ ମୋ ନିଜ ପାଇଁ ନୁହେଁ । ମୁଁ ଯାହା କରିଚି ଠିକ୍ କରିଚି । ମୃତ୍ୟୁ କିମ୍ବା କାରାବାସ ପାଇଁ ମୋର ସାମାନ୍ୟତମ ଅନୁଶୋଚନା ମଧ୍ୟ ନାହିଁ । ମୋ ଭଳି କେତେଜଣଙ୍କୁ ନିଶ୍ଚୟ ଦେଶର ମଙ୍ଗଳପାଇଁ ଆତ୍ମ ବିସର୍ଜନ କରିବାକୁ ପଡ଼ିବ, କିନ୍ତୁ ହ୍ନମୀରିକା ? ଭାରତ କ'ଣ ଆଉ ଜଣେ ଏଭଳି ପୁଅ ଜନ୍ମ ଦେଇପାରିବ ? ମୋର ତ ବିଶ୍ୱାସ ହେଉନି ।

ହ୍ନମୀରିକାକୁ ସେମାନେ କି ଯନ୍ତ୍ରଣା ନ ଦେଲେ ? କାରାଗାରର ଚଟାଣ ତାର କୋମଳ ରକ୍ତରେ ନାଲ ହୋଇଗଲା । ତଥାପି ସେ ପ୍ରମାଣିତ କଲା ଯେ ଏ ଯୁଗ ମଧ୍ୟ ଦେବଦୂତମାନଙ୍କୁ ପ୍ରସବ କରିପାରେ ।

କି ଘୃଣ୍ୟ କାମ ତମେ କଲ ଦେବବାଳା ? ଶାସକ ଦଳରେ ଯୋଗ ଦେଇ ତମେ ଏତେ ଦୁଃଖରେ ମୁଣ୍ଡ ଟେକୁଥିବା ବିପ୍ଳବର ଶିଶୁଟିକୁ ଶେଷ କରିଦେଲ ?

ଅସଂଖ୍ୟ ଆଦର୍ଶବାଦୀ ତରୁଣଙ୍କୁ ତମେ ହ୍ନମୀରିକାଙ୍କ ପବିତ୍ର ନାମରେ ଶାସକଦଳରେ ଯୋଗଦେବାକୁ ଆହ୍ୱାନ କରିଥିବ । ସେଇ ସର୍ବତ୍ୟାଗୀ ତରୁଣ ମାନେ ଭୀଷଣ ଗୋଲକଧନ୍ଦା ଭିତର ଦେଇ ଗତି କରିଥିବେ ।

ନା, ମୁଁ ଆଉ ଭାବି ପାରୁନି । ମୋର ମସ୍ତିଷ୍କ ଭିତରେ ଯନ୍ତ୍ରଣା ଅସହ୍ୟ ହୋଇଗଲାଣି ।

ଅମୃତ ବଜାର ପତ୍ରିକାରେ ମୁଁ ତମର ଫଟୋ ଦେଖିଥିଲି । କଲିକତାର ସାମ୍ବାଦିକମାନେ 'ବିପ୍ଳବୀ' ବୋଲି ତମକୁ ସ୍ୱୀକୃତି ଦେଇଥିଲେ । ସେଦିନ କେତେ ଆନନ୍ଦରେ ଆମେ ସେ ସମ୍ବାଦଟିକୁ ସ୍ୱାଗତ କରିଥିଲୁ ।

ତମେ ଘୂରିବୁଲିଥିଲ ସାରା ଭାରତ ବର୍ଷ । ତମ ପଛରେ ଲାଗିଥିଲା ବିରାଟ ପଲଟଣ ପୋଲିସ ଓ ସି. ଆଇ.ଡ଼ି.ଙ୍କର ।

ସେ ସବୁ କ'ଣ ଏକ ମିଥ୍ୟାର ମୁଖା ଥିଲା । ସେ ସବୁ କ'ଣ ଏକ ବିଷକୁମ୍ଭ ପୟୋମୁଖ ତରୁଣର ଛଳନାଜାଲ ଥିଲା ?

ତମେ ଆଜି ପ୍ରଶ୍ନ ? ତୁଳନା କଲେ ମୁଁ ସ୍ତମ୍ଭୀତ ହୋଇଯାଉଛି । ଇଂଲଣ୍ଡର କବି ବ୍ଲେକ୍‌ଙ୍କ ଭାଷାରେ ପ୍ରଶ୍ନ ପଚାରିବାକୁ ଇଚ୍ଛା ହେଉଛି, 'ଯେଉଁ ହାତ ନିରୀହ ମେଣ୍ଢାଛୁଆକୁ ଗଢ଼ିଛି, ସେଇ ହାତ କ'ଣ ଭୟଙ୍କର ଭାବେ ଜଳୁଥିବା ବାଘକୁ ସୃଷ୍ଟି କରିଛି ?

ତମର ସୌନ୍ଦର୍ଯ୍ୟ ଓ ରୁଦ୍ରତା ଗୋଟିଏ ଦେଶର ଜୀବନରେ ଅଭିଶାପ ଆଣି ଦେଇଛି । ଗୋଟିଏ ସଂଗ୍ରାମଶୀଳ ଜାତିକୁ ପଥଭ୍ରଷ୍ଟ କରାଇଛି ।

ଶାନ୍ତ ସକାଳର ଗଙ୍ଗଶିଉଳି ପରି ନଜରର ଶୁଭ୍ରତା ମାଧୁର୍ଯ୍ୟରେ ଭରା ଗୋଟିଏ ପରିବାରର ଆକାଶରେ ସ୍ନିଗ୍ଧତା ଓ ଶୁଚିତାର ରଙ୍ଗ ବୋଳି ଦେଇଛି । ମୋର ଦୁର୍ବାର ଜୀବନର ଅଗ୍ନିଦଗ୍ଧ କ୍ଷଣଗୁଡ଼ିକୁ କୋମଳ ପ୍ରଲେପର ଆସ୍ୱମ ଦେଇଛି ।

ତମଭଳି କଳଙ୍କିତ ଏକ ରଜନୀରେ ତମେ ଝୁମୀରିଆ ଜୀବନରେ ପ୍ରବେଶ କରିଥିଲ ସ୍ୱପ୍ନଭଳି । ସପୁଗର୍ଭ ଆକାଶରେ କୃଷ୍ଣକାୟ ବାଦଲ ସୈନ୍ୟସଜ୍ଜା କରୁଥିଲେ ପୃଥିବୀକୁ ଶରାହତ କରିବାଲାଗି । ସହରର ବିଜୁଳି ବତୀ ସବୁ ଅସହାୟ ନାରୀ ଭଳି ରୁଦ୍ଧ କକ୍ଷ ମଧ୍ୟରେ ଆତ୍ମଗୋପନ କରିଥିଲେ ।

ସନ୍ଧ୍ୟାର ପବନରେ ମାଇକ୍‌ର ଗର୍ଜନ ସହରସାରା ଖେଳି ଯାଇଥିଲା । ସହରର ଗଳି, ଉପଗଳି ସବୁ ପୋଲିସ୍‌ର ବୁଟ୍ ଆଘାତରେ ଆର୍ତ୍ତନାଦ କରୁଥିଲେ ।

ପୋଲିସ୍ ଖୋଜୁଥିଲା ସ୍ୱପ୍ନଜନ୍ମା ଦେବବାଳା ଘୋଷକୁ । କଲିକତାର ଏକ ଆତଙ୍କବାଦୀ ଦଳର ନେତ୍ରୀ ସୁଶ୍ରୀ, ମେଧାବିନୀ ଦେବବାଳା ଘୋଷଙ୍କୁ କୋରାପୁଟ ଜିଲ୍ଲାର ଉଞ୍ଚା ଉଞ୍ଚା ପାହାଡ଼ ସନ୍ଧିରେ ଆବିଷ୍କାର କରିଥିଲେ ସରକାରୀ ଦଳର ଗୁପ୍ତ ସମ୍ବାଦଦାତା ରାଧାକୃଷ୍ଣ ପାଢ଼ ।

ତାପରେ ପୋଲିସ୍ ସମ୍ବାଦ ପାଇଥିଲା ଦେବବାଳା ଘୋଷ ଝପଣୀ-ମାଳିନୀ ରୂପରେ ସହରରେ ଆତ୍ମଗୋପନ କରିଛନ୍ତି ।

ପୋଲିସ୍ ହୁଇସିଲ୍ ଘନ ଘନ ବାଜି ଉଠିଥିଲା । ପୋଲିସ୍ ସହିତ ହାତ ମିଳାଇ ସହରର ନିଦ୍ରା ନଷ୍ଟ କରୁଥିଲେ ଶାସକଦଳର କେତେକ ଯୁବକ ଗୁଣ୍ଡା ।

ଶକ୍ତି ପ୍ରାପ୍ତ କାରଣଟା ହେଲା । ଆତଙ୍କର କନକନିଆ ପବନ ଝରକା କବାଟର ଫାଙ୍କଦେଇ ସହରର ବହୁ ଗୃହ ମଧ୍ୟକୁ ପ୍ରବେଶ କରିପାରୁଥିଲା ।

ତାରାହୀନ ଆକାଶରେ କେବଳ ଅନ୍ଧକାର ଅବ୍ୟାହତ ଥିଲା । ସୂଚୀଭେଦ୍ୟ ଅନ୍ଧାରରେ ମେଘପ୍ରିୟା ଅଭିସାରିକାଙ୍କର ପଥକୁ ଉଜ୍ଜ୍ୱଳ କରୁଥିଲା ।

ଖଟ୍ ଖଟ୍ !

ପ୍ରଥମେ ଅସ୍ପଷ୍ଟ ଥିବା ଶବ୍ଦର ପରିମାଣ ଆସ୍ତେ ଆସ୍ତେ ବୃଦ୍ଧି ପାଉଥିଲା ।

'କିଏ ?' ସ୍ୱାମୀଜୀଙ୍କ ଗମ୍ଭୀର ଗଳା ନୈଶ ବାୟୁମଣ୍ଡଳରେ ଲହରୀ ସୃଷ୍ଟି କରିଥିଲା ।

ଆଉଥରେ କବାଟରେ କରାଘାତ ।

'କିଏ ବାହାରେ ରହିଛ କହୁନ କାହିଁକି ?'

ସ୍ୱାମୀଜୀଙ୍କ ଦ୍ୱିତୀୟ ପ୍ରଶ୍ନ ।

ସରୁ ଅଥଚ ପରିଷ୍କାର ଗଳାରୁ ଶୁଣାଗଲା

'ମୁଁ ଦେବଯାନୀ ।'

କବାଟ ଖୋଲି ଯାଇଥିଲା ।

'ମୋତେ ଚିହ୍ନି ପାରୁଛନ୍ତି ?' ମହିଳାର ମୁଖରେ ସ୍ମିତହାସ୍ୟଟିଏ ଲକ୍ଷିତ ହୋଇଥିଲା ।

'ଜାଣେ ।' ସ୍ୱାମୀଜୀଙ୍କର କୌଣସି ଦୁର୍ବଳତା ସୂଚକ ଭାବପ୍ରକାଶ ନଥିଲା । କଲିକତାର ପତ୍ରପତ୍ରିକାରେ କେବେ କେବେ ଏହି ସରକାରଙ୍କ ମୁଣ୍ଡବ୍ୟଥାର କାରଣ ହୋଇଥିବା ମହିଳାଙ୍କର ଫଟୋ ବାହାର ହୋଇଥିଲା ।

'ମୋ ଫଟୋ ଆପଣ ନିଶ୍ଚୟ ଖବରକାଗଜରେ ଦେଖିଥିବେ ।'

'ଦେଖିଛି ।' ସ୍ୱାମୀଜୀଙ୍କର ନିସ୍ପୃହ ଉତ୍ତର ।

'ଆଜି ମୋତେ ଧରିବାପାଇଁ ସବୁଆଡ଼ରେ ପୋଲିସ୍ ଆସ୍ଥାନ ଜମାଇ ସାରିଛି ।'

'ଜାଣେ ।'

'ମୁଁ ଜାଣିବାକୁ ଚାହେଁ ଆପଣ ମୋତେ ଆଶ୍ରୟ ଦେଇଛନ୍ତି କି ନାହିଁ ?'

'ଆପଣଙ୍କର ଇଚ୍ଛା ହେଲେ ପାଖ କୋଠରୀରେ ରହି ପାରନ୍ତି ?'

'ପୋଲିସ୍ ଯଦି ମୋତେ ଖୋଜେ— '

ତ୍ରମୀଳା ନିରୁତ୍ତର ଥିଲା ।

'ପୋଲିସ୍ ମୋତେ ଖୋଜିଲେ ଆପଣ କି ଉତ୍ତର ଦେବେ ?'

ତଥାପି ତ୍ରମୀଳା ନୀରବ ଥିଲା ।

'ପୋଲିସ୍ ଖୋଜିଲେ ଆପଣ ମୋତେ ଧରାଇ ଦିଅନ୍ତୁ ।'

'ତ୍ରମୀଳାକୁ କ'ଣ ଆପଣ ଚିହ୍ନି ନାହାନ୍ତି ?'

'ତେବେ ମୁଁ ଯେମିତି ବଞ୍ଚିବି ତାର ବ୍ୟବସ୍ଥା କରନ୍ତୁ ।'

'ଆପଣ କ'ଣ ଚାହୁଁଛନ୍ତି ?'

'ମୁଁ ଆପଣଙ୍କ ଘରର ଯେ କୌଣସି କୋଣରେ ରହିଲେ ବି ପୋଲିସ୍ ମୋତେ ନିଶ୍ଚୟ ଖୋଜି ବାହାର କରିବ ।'

'ତେବେ ଉପାୟ ?'

'ଉପାୟ ଆପଣଙ୍କ ହାତରେ ।'

'ମୋ ହାତରେ ?'

'ହଁ, ଆପଣଙ୍କ ହାତରେ ! ଆପଣ ପରିଚୟ ଦେବେ ମୁଁ ଆପଣଙ୍କର ସ୍ୱାମୀ ।'

'କିନ୍ତୁ ମୁଁ ଯେ ଅବିବାହିତ ।'

'ସେଇଥିପାଇଁ ତ ଆପଣଙ୍କ ସ୍ୱାମୀ ହେବା ମୋ ପକ୍ଷରେ ସୁବିଧାଜନକ ହୋଇ ପଡ଼ିଛି ।'

'ମୁଁ ଆପଣଙ୍କ କଥା ବୁଝିପାରୁନି ।'

'ବୁଝିବା ଦରକାର ନାହିଁ । ଆପଣ କେବଳ ପୋଲିସ୍ ଅଫିସରଙ୍କୁ କହିବେ ମୋତେ ଆପଣ ବାହା ହୋଇଛନ୍ତି ।'

'ନା'

'ତା ହେଲେ ଆପଣ ମୋତେ ପୋଲିସ୍ ହାତରେ ସମର୍ପଣ କରି ଦଅନ୍ତୁ'

ଝିଅଟିର ଆଖିରେ ଲୁହ ଚକ୍ ଚକ୍ କରୁଥିଲା ।

କ୍ରମୀଶକା ଚିନ୍ତିତ ହୋଇ ପଡ଼ିଥିଲେ । ସେ କହିଲେ 'ମୋ ସ୍ତ୍ରୀ ବୋଲି ପରିଚୟ ଦେଲେ, ପୋଲିସ୍ କ'ଣ ଛାଡ଼ିଦବ ?'

'ପୋଲିସ୍‌ର ସନ୍ଦେହ ତ ନିଶ୍ଚୟ ରହିବ । କିନ୍ତୁ ଉପରମହଲର ବିନା ଅନୁମୋଦନରେ ଭାରତର ଜଣେ ଉଚ୍ଚନେତାଙ୍କ ସ୍ତ୍ରୀଙ୍କୁ ଗିରଫ୍ କରିବାକୁ ପୋଲିସ୍ ସାହସ କରିବନି ।'

'ଏ ଆଦେଶ ସେମାନେ ଅବଶ୍ୟ ଦେବେ ।' 'ମୁଁ କୌଣସି ଅପରାଧ କରିନି । ମୋ ବିରୁଦ୍ଧରେ ସାମାନ୍ୟତମ ପ୍ରମାଣ ମଧ୍ୟ ସେମାନଙ୍କର ପାଖରେ ନାହିଁ ।'

ସେହି ସମୟରେ ପୋଲିସ୍ ଏସ୍. ପି. ଯେତେବେଳେ ଘରେ ପ୍ରବେଶ କଲେ, ଝିଅଟି ସିନ୍ଦୂର ପିନ୍ଧି ସାରିଥିଲା ।

କ୍ରମୀଶକା ତାକୁ ନିଜର ସ୍ତ୍ରୀ ବୋଲି ପରିଚୟ ଦେଲେ । 'ଆପଣଙ୍କ ସ୍ତ୍ରୀ ଜଣେ ଅପରାଧୀ । ତେଣୁ ତାଙ୍କୁ ଆମେ ନଜର ବନ୍ଦୀରେ ରଖିବୁ । ଆପଣ ଏ ଘର ବାହାରକୁ ଯାଇ ପାରିବେ କିନ୍ତୁ ତାଙ୍କୁ ଆମେ ବାହାରକୁ ଯିବାକୁ ଅନୁମତି ଦେବୁନି ।...ଆମକୁ ଦୟାକରି ଏକ ଯୁଗଳ ଫଟୋ ଉଠାଇବାକୁ ଅନୁମତି ଦିଅନ୍ତୁ ।'

ଉଭୟଙ୍କର ଯୁଗ୍ମ ଫଟୋ ସେ ଦିନ ରାତିରେ ଉଠାଯାଇଥିଲା ।

ଏସ. ପି. ଯିବା ପୂର୍ବରୁ କହିଲେ 'ମୁଁ ଉପରିସ୍ଥ କର୍ମକର୍ତ୍ତା'ଙ୍କୁ ଏ ବିଷୟରେ ଜଣାଇଦେବି । ସେମାନଙ୍କଠାରୁ ନିର୍ଦ୍ଦେଶ ନ ଆସିବା ପର୍ଯ୍ୟନ୍ତ ଦେବକାଳାଦେବୀ ମୁକ୍ତ ନୁହନ୍ତି ।

ଏସ୍. ପି. ଚାଲିଯାଇଥିଲେ ।

ଖବର କାଗଜରେ କ୍ରମୀଶକାଙ୍କ ବିବାହ ଖବର ଓ ଫଟୋ ପ୍ରକାଶିତ ହେଲାପରେ ଚତୁର୍ଦ୍ଦିଗରୁ ଶୁଭେଚ୍ଛା ମୂଳକ ଅସଂଖ୍ୟ ବାର୍ତ୍ତା ଆସିବାକୁ ଲାଗିଲା ।

ଚରମ ବିପଦର ମୁହୂର୍ତ୍ତରେ ଯେଉଁ, ପୁରୁଷର ଆଶ୍ରୟ ଦେବବାଳା ପାଇଥିଲେ, ସେଇ ଆଶ୍ରୟକୁ ଚିରସ୍ଥାୟୀ କରିବା କାମନା ତାଙ୍କର ଥିଲା ।

ଯେଉଁ ସମ୍ବନ୍ଧକୁ ଦାୟରେ ପଡ଼ି ଉର୍ମୀଳା ଗ୍ରହଣ କରି ନେଇଥିଲେ, ସେଇ ସମ୍ବନ୍ଧ ଯେ କେତେବଡ଼ ମିଥ୍ୟା ଉପରେ ପ୍ରତିଷ୍ଠିତ ତାହା ଚିରଦିନ ଲୋକଲୋଚନ ଅଗୋଚରରେ ରହିଗଲା ।

ବିପ୍ଳବୀ ଜୀବନରେ ବିଶ୍ରାମର ପ୍ରଶ୍ନ ନଥିଲା । ଦିନେ ଉର୍ମୀଳା କହିଲେ 'ଦେବବାଳା, ତମେ ଏଥର ମୁକ୍ତ । ପୋଲିସ୍ ପାଖରେ ତମ ବିରୁଦ୍ଧରେ କୌଣସି ପ୍ରମାଣ ନାହିଁ । ମୁଁ ଆଜି ରାୟଗଡ଼ ଛାଡ଼ୁଛି । ତମେ କୁଆଡ଼େ ଯିବ ?

'ମୁଁ ଆପଣଙ୍କ ସାଥିରେ ଯିବି ।'

ମୌସୁମୀ ଭଳି ଯାର ଗତିବିଧି, ଦେବବାଳା ତା ସହିତ ନିଜର ଭାଗ୍ୟଡ଼ୋରୀକୁ ବାନ୍ଧି ଦେଇଥିଲେ । କେରଳର ନାରିକେଳ ବନରେ, ଆସାମର ଚା ବଗିଚାରେ, ବଙ୍ଗଳାର ସାନ୍ତାଳ ଗ୍ରାମରେ ସେମାନଙ୍କର ପଦଧ୍ୱନି ଶୁଣା ଯାଇଥିଲା ।

ଉର୍ମୀଳାଙ୍କ ସଂଯମ ଦେବବାଳାଙ୍କୁ ଆଶ୍ଚର୍ଯ୍ୟ କରିଥିଲା । ଏକ ବିଶ୍ୱସ୍ତ ସହକର୍ମୀ ଭଳି ସେ ଉର୍ମୀଳାଙ୍କ ପ୍ରତ୍ୟେକ କାମରେ ସହଯୋଗ ଦେଇଥିଲେ ।

ଉର୍ମୀଳା ସତର୍କ ଥିଲେ, ଦେବବାଳାଙ୍କର ସୁବିଧା ଅସୁବିଧାର ଖବର ବୁଝୁଥିଲେ ଓ ସବୁଠାରେ ନିଜର ସ୍ତ୍ରୀ ବୋଲି ପରିଚୟ ଦେବାକୁ କୁଣ୍ଠିତ ନଥିଲେ । କିନ୍ତୁ ଯେଉଁ ଜିନିଷ କୌଣସି ନାରୀ ସ୍ୱାମୀ ପାଖରୁ ଆଶାକରେ, ତା ସେ ପର୍ଯ୍ୟନ୍ତ ଦେବବାଳାଙ୍କ ପକ୍ଷରେ ଅପ୍ରାପ୍ୟ ଥିଲା ।

ଅଗ୍ନି ଭଳି ତେଜସ୍ୱୀନ ରୂପ, ଅନ୍ୟକୁ ପ୍ରଭାବିତ କରିପାରିବାଭଳି ବୁଦ୍ଧି, ଆଦର୍ଶ ପ୍ରତି ଅନୁରକ୍ତି; ଏ ସମସ୍ତ ଉର୍ମୀଳାଙ୍କୁ ପ୍ରଭାବିତ କରିଥିଲା । କିନ୍ତୁ ବିହ୍ୱଳ କରିନଥିଲା । ନିରାସକ୍ତ ଭାବରେ ସେ ଦେବବାଳାଙ୍କ ସହ ମିଶୁଥିଲେ ।

ଆଷାଢ଼ ଗଗନର ଘନଘଟା, ଶୁଭ୍ର ଆକାଶରେ ନିର୍ମଳ ଚାନ୍ଦ, ବସନ୍ତ ସକାଳର କୋକିଳର କୁହୁ; କୌଣସିଟି ଉର୍ମୀଳାଙ୍କର ତପସ୍ୟା ଭଙ୍ଗ କରିନଥିଲା ।

କେବେ କେବେ ଦେବଯାନୀ ଇଙ୍ଗିତ ଦେଉଛନ୍ତି; ନାରୀ ସୁଲଭ ଲଜ୍ଜାକୁ ଜଳାଞ୍ଜଳି ଦେଇ ମନର କାମନାକୁ ପ୍ରକାଶ କରୁଚନ୍ତି; କିନ୍ତୁ ଏକ ମଧୁର ମୁହାଣିରେ ତାଙ୍କୁ ମୁଗ୍ଧ କରିଦେଇ ତ୍ରିମୀରକା କହୁଚନ୍ତି, 'ଆମେ ପର ବିବାହ କରିବେ ଏ ଦେଶକୁ, ଏ ମାଟିକୁ । ତମେ ଶୁଣିପାରୁଚ ଦାଦା ଏ ମାଟିର କ୍ରନ୍ଦନକୁ, ଏ ମାଟିର ବ୍ୟଥିତାର ଦୀର୍ଘ ନିଃଶ୍ୱାସକୁ ।'

ନାରୀ ଶେଷରେ ବିଜୟିନୀ ହୋଇଛି । ବନ୍ଧନ ଗାଢ଼ତର ହୋଇଛି । ଦେବଯାନୀଙ୍କ ତପସ୍ୟା ସିଦ୍ଧିଲାଭ କରିଛି । ଅସ୍ତବେଳା ଆକାଶର ବିହଙ୍ଗ ସ୍ୱର୍ଣ୍ଣ ପିଞ୍ଜରାରେ ଧରା ଦେଇଛି ।

ଧରିତ୍ରୀର ଅଙ୍ଗରେ ବେପଥୁ ଜାଗିଉଠିଛି । କାମନାର ଲାଲ ଲାଲ ପୁଷ୍ପ ଫେଣ୍ଡା ମେଲାଇ ଜଳିଚନ୍ତି । ପୁରୁଷ ଅଙ୍ଗରେ ନାରୀ ଲତାଇ ପଡ଼ୁଛି ।

ତା ପରେ— ? ତାପରେ ଦେଶର ଆକାଶରେ ଉଡ଼ୁଛନ୍ତି ଚଳ ଚଳ କଳା ନିଶାଣ । ତ୍ରିମୀରକାଙ୍କ ଦେହରେ ଅସ୍ୱାଭାବିକ ହୃଦ୍‌ରୋଗର ଲକ୍ଷଣ-ଗୁଡ଼ିକ କୌଣସି ଔଷଧ ମାଧ୍ୟମରେ ସୃଷ୍ଟି କରାଯାଇଛି ? ସମ୍ଭବତଃ ଦେବଯାନୀ କିମ୍ବା ଅନ୍ୟ କୌଣସି ଷଡ଼କର୍ମୀଙ୍କ କରିଆରେ ଏ ଔଷଧ ତ୍ରିମୀରକାଙ୍କୁ ଖୁଆ ଯାଇଛି ।

ମୁଁ ତମକୁ ବୁଝିପାରୁନି ଦେବଯାନୀ । ଏବେ ବି ମୋର ସନ୍ଦେହ ନିରାକରଣ ହୋଇପାରୁନି ।

ତମର ଭଲପାଇବା ଭେଜାଲ ଥିଲା ଏକଥା ବିଶ୍ୱାସ କରିବାକୁ କଷ୍ଟହେଉଛି । ଦିନପରେ ଦିନ ମୁଁ ତମକୁ ଲକ୍ଷ୍ୟ କରିଛି । ତମର ଅକୃତ୍ରିମ ବ୍ୟବହାର ଦେଖିଛି । ତମକୁ ନାରୀକୁଳର ଭୂଷଣ ମନେ କରିଛି ।

ନା, ନା । ତମେ ଦେବୀ ନୁହ ଦେବଯାନୀ, ତମେ ଦାନବୀ । ତଥ୍ୟର ପ୍ରାମାଣିକତାକୁ ମୁଁ ଅବିଶ୍ୱାସ କରି-ପାରିବିନି । ନିଜ ଆଖି ଦେଖା ଘଟଣାକୁ ମୁଁ ମିଥ୍ୟା ମନେ-କରିପାରିବିନି ।

କେମିତି ଆମେ ଜାଣିଥାନ୍ତୁ ଯେ ସରକାରର ସର୍ବୋଚ୍ଚ କର୍ମକର୍ତ୍ତାମାନେ ଭାରତର ସବୁଠାରୁ ଟେକଯ୍ୟାନ୍ ଘାଟିକୁ ନିଭାଇ ଦେବାପାଇଁ ଷଡ଼ଯନ୍ତ୍ର କରୁଛନ୍ତି ।

ଆଜି ସେଇ ଦଲାଲ ହୃତପିଣ୍ଡ ପ୍ରେମାଳଷ୍ଟମାନେ । ସେମାନେ କେତେ ସହଜରେ ନିଜକୁ ବିକି କରାଇଦେଉଛନ୍ତି ।

ପ୍ରେସଲ ହୋମରୁ ହ୍ୱମୀରିକାଙ୍କ ଅଚେତନ ଶରୀରକୁ ଯେତେବେଳେ ଦରଣବୃଜ କରାଗଲା, ତମେ କେମିତି ସେ କଥା ବରଦାସ୍ତ କରିପାରିଲ ଦେବବାଳା ?

ରଘୁଗଡ଼ର ଝଞ୍ଜାବଣ୍ଟ ନଦୀ କୂଳରେ ଯେତେବେଳେ ଚନ୍ଦନ କାଠ ଓ ଘିଅ ବ୍ୟବହାରକରି ପୋଲିସ ଜଗୁଆଳିରେ ଏକ ଅଜ୍ଞାତ ବ୍ୟକ୍ତିର ଆବରଣ-ଯୁକ୍ତ ଶବକୁ ଦାହ କରାଗଲା, ତମେ ସେ ସବୁ କଥା କେମିତି ସହିପାରିଲ ହ୍ୱମୀରିକା ଜାପୁ ?

ହ୍ୱମୀରିକାର ମୃତ୍ୟୁ ଘୋଷଣାପରେ ଯେତେବେଳେ ସାରା ଦେଶ ଶୋକକାତର ଥିଲା, ହ୍ୱମୀରିକାର ତେଜପୂର୍ଣ୍ଣ ଦେହ ଉପରେ ଗୁପ୍ତ କୋଠରୀରେ ଅକଥନୀୟ ଅତ୍ୟାଚାର କରାଯାଉଥିଲା । ଶାସକଦଳ ସପକ୍ଷରେ ବିବୃତିଟିଏ ଯୋଗାଡ଼ କରିବାଲାଗି ।

ଘୃଣ୍ୟ ସ୍ୱାର୍ଥପାଇଁ ନରକ କୀଟମାନେ ଦେଶର ସର୍ବଶ୍ରେଷ୍ଠ ମାନବକୁ ତିଳ ତିଳକରି ଯନ୍ତ୍ରଣାର ଦମ୍ଭ ଟୀନ କରାଇଛନ୍ତି ।

ଗୁଲଦା ମୃତ୍ୟୁ ପରେ କନ୍ଦୁଚନ୍ଦ୍ର ଯେଉଁ ଦିନ ପ୍ରଧାନମନ୍ତ୍ରୀ ଆବେଗ ପୂର୍ଣ୍ଣ ଭାଷାରେ ହ୍ୱମୀରିକାଙ୍କର ଗୁଣଗାନକରି ତାଙ୍କର ମୂର୍ତ୍ତିର ଆବରଣ ଉନ୍ମୋଚନ କରୁଥିଲେ; ଠିକ୍ ସେଇଦିନ ନରହନ୍ତାମାନେ ହ୍ୱମୀରିକାଙ୍କର ପବିତ୍ର ବପୁକୁ ଚିରଦିନପାଇଁ ଅତ୍ୟାଚାରରୁ ମୁକ୍ତି ଦେଇଥିଲେ । ନରହନ୍ତା ପ୍ରଧାନମନ୍ତ୍ରୀଙ୍କ ସହ ଏକା ସଭାମଞ୍ଚରେ ତମେ କେମିତି ବସିପାରିଲ ଦେବବାଳା ?

ଏକଦା ବିପଦରୁ ତମକୁ ଉଦ୍ଧାର କରିବାକୁ ଯାଇ ସେ ତମକୁ ସ୍ତ୍ରୀର ମର୍ଯ୍ୟାଦା ଦେଇଥିଲା, ତାର କୌମାର୍ଯ୍ୟର ବ୍ରତକୁ ଉଦ୍‌ଯାପିତ କରିଥିଲା, । ତାର ଭଲପାଇବାର ତମେ ଏତେବଡ଼ ଅପମାନ କରିପାରିଲ କିପରି ?

ତମେ ମରି ପାରିଲନି ଦେବବାଳା ? ବିଷ ତମକୁ ଜୁଟିଲନି ? ଏ ଶତାବ୍ଦୀ ଏକ ଭେଜାଲ୍ ଶତାବ୍ଦୀ ! ଛଳନା ଓ ପ୍ରବଞ୍ଚନା ଏ ଶତାବ୍ଦୀର ଉତ୍ଥାନର ଅସ୍ତ୍ର ! ତମେ ଏ ଯୁଗର ଉପଯୁକ୍ତ କନ୍ୟା !

ମଣିଷ ସମସ୍ତଙ୍କୁ ଜିତିଛି । ହିଂସ୍ର ନଖଦନ୍ତ ସମ୍ପନ୍ନ ମାରାତ୍ମକ ପ୍ରାଣୀ ମଣିଷ ନିକଟରେ ନତମସ୍ତକ ହୋଇଛନ୍ତି । ସାଂଘାତିକ ରୋଗର ଜୀବାଣୁ ମଣିଷର ମସ୍ତିଷ୍କର ତେଜରେ ଜଳିଯାଇଛନ୍ତି ।

ଶେଷରେ ମଣିଷର ଶତ୍ରୁ ରୂପେ ଦେଖା ଦେଇଛି ମଣିଷ । 'ସବୁ ଗରଳରୁ ମଣିଷ ତରଳ ଅତି ଉତ୍କଟତର' ଗାଇ ଉଠିଛନ୍ତି କବି । ମଣିଷର ଭାଷା, ଯାହା ସମସ୍ତ କଳା ଓ ବିଜ୍ଞାନର ଜନନୀ, ମଣିଷ ଦ୍ୱାରା ଧର୍ଷିତ ହୋଇଛି ।

ଏ ସଭ୍ୟତା ହୁଏତ ଲୋପ ପାଇଯାଇପାରେ ମଣିଷର ଦୋଷରେ ଜର୍ଜରିତ ହୋଇ । ଅତଏବ ଜୀବମାନେ ପୃଥିବୀପୃଷ୍ଠରୁ ବିଦାୟ ନେଲାବେଳେ ମଣିଷ ବି ତାର ବିଦାୟ ନେଇଯାଇପାରେ ।

କ୍ଷମତା ତମର ଏତେ ପ୍ରିୟ ଥିଲା ନାରୀ ? କ୍ଷମତା ପାଇଁ ତମେ ନାରୀଜୀବନର ଶ୍ରେଷ୍ଠ ଭୂଷଣକୁ ଜଳାଞ୍ଜଳି ଦେଇ ପାରିଲ ?

ସ୍ୱାମୀଜୀଙ୍କର ପତ୍ନୀ ହିସାବରେ ତମେ କ'ଣ କମ୍ କ୍ଷମତାର ଅଧିକାରିଣୀ ଥିଲ ? ସାରା ଦେଶର ଅକୃତ୍ରିମ ସ୍ନେହର ପବିତ୍ର ଜଳରେ ଅଭିଷିକ୍ତ ହୋଇ ମଧ୍ୟ ତମର କ୍ଷମତା ପିପାସା କ'ଣ ଶାନ୍ତ ହୋଇପାରି ନଥିଲ ?

ତମର କାର୍ଯ୍ୟକଳାପ ମୋ ପକ୍ଷରେ ଅବୁଝା ରହିଗଲା ଦେବକାଳା ! ହୁଏତ ପରପାରରେ ଅମାନୁଷୀ ମାନସିକ ଶକ୍ତିର ଅଧିକାରୀ ହେଲେ ମୁଁ ତମର କାର୍ଯ୍ୟକଳାପକୁ ବୁଝିପାରେ ।

ଓ୍ୱାର୍ଡର ଚିନ୍ତିତ ଜଣାଯାଉଛି । ସମ୍ଭବତଃ ଦେଶରେ କୌଣସି ପରିବର୍ତ୍ତନ ଦେଖାଦେଇଛି ।

ବେଳେ ବେଳେ ଭାବେ ଏ ଜେଲ୍ ସବୁ କାହାପାଇଁ ? ଦେଶର ସବୁଠୁ ବଡ଼ ଅପରାଧୀମାନେ ବଡ଼ ବଡ଼ କୋଠାଘରେ । ସେମାନଙ୍କ ପାଖରେ ଅମାପ ଅର୍ଥ ଓ କ୍ଷମତା । ଛୋଟଲୋକ, ସାଧାରଣ ସ୍ତରର ଚୋରଙ୍କୁ ଯେଉଁମାନେ ପେଟ ଜଳନରେ କାକୁଡ଼ି କମ୍ପିଟିଏ କଖାରୁ ଡଙ୍କଟିଏ ନେଇ ଯାଉଛନ୍ତି ପୋଲିସ ଧରନ୍ତି ଓ କୋର୍ଟ କଠୋର ଦଣ୍ଡ ଦିଅନ୍ତି । ବଡ଼ ଚୋରମାନେ ପୋଲିସ୍‌ଙ୍କର ହାକିମ ।

ମଣିଷ ଉପରେ ମଣିଷର ଅତ୍ୟାଚାରର ପରିସମାପ୍ତି କେବେ ? ଯୁଗନ୍ଧର, ମହାପୁରୁଷମାନେ ଆସିଛନ୍ତି । ଦେଶ ସାରା ଏକ ନୂତନ ଆଶା ଓ ଉନ୍ମାଦନାର ଜୁଆର ସୃଷ୍ଟି ହୋଇଛି । ବିପ୍ଳବର ଜଗନ୍ନାଥ ରଥ ଆଗେଇ ଯାଉଛି । ତାପରେ ପୁଣି ଆସିଯାଉଛି ଶୈଥିଲ୍ୟ । ନୂଆ ନୂତନ ଶ୍ରେଣୀ ଅଧିକ ସୂକ୍ଷ୍ମଭାବରେ ଶୋଷଣ ଜାରି ରଖିଛି ମଣିଷ ଉପରେ ।

ଶୋଷଣ କ'ଣ ମଣିଷର ଭବିତବ୍ୟ ? ନା ମୁଁ ଏକଥା ବିଶ୍ୱାସ କରିପାରିବିନି । ଶୋଷଣ ବିରୁଦ୍ଧ-ସଂଗ୍ରାମରେ ମୁଁ ଆସ୍ଥା ରଖିଛି । ଏ ରୁଦ୍ଧ କଣ୍ଠ, ଏ ଅଣନିଃଶ୍ୱାସୀ ଦୂଷିତ ଆବହାଓ୍ୱା ମୋର ସ୍ୱାଧୀନତାକାମୀମାନଙ୍କୁ ଦଳିତ କରିପାରିବନି । ମୁଁ ଦେଖୁଛି ନିରନ୍ତର ବିପ୍ଳବର ସ୍ୱର । ସମାଜବାଦୀ ରୁଷଜାଲସଙ୍କ ୟୁଗୋସ୍ଲୋଭିଆ, କମ୍ୟୁନିଷ୍ଟ ଚୀନର ତିକ୍ତ ଅନୁଭୂତି ସମ୍ଭବତଃ ମାଓଙ୍କୁ ପ୍ରେରିତ କରିଥିଲା ନିରନ୍ତର ବିପ୍ଳବର ଧ୍ୱନି ଦେବାଲାଗି ।

ମଣିଷ ମନରେ କେଉଁଠି ରହିଯାଉଛି ଅଧିକାରର ମୋହ, ଅନ୍ୟକୁ ଦବାଇରଖି ନିଜେ ଆଗେଇ ଯିବାର କାମନା । ଜଣେ ଗାନ୍ଧୀ, ଜଣେ ମାଓ, ଜଣେ ଲେନିନ୍ ହୁଏତ ଏଇ ଅଧିକାର ମୋହକୁ ଜିତିଯାଇପାରନ୍ତି । କିନ୍ତୁ ସେମାନଙ୍କର ଅନୁଗାମୀ ସାଧାରଣ ମଣିଷ ? ସେ ପଥଭ୍ରଷ୍ଟ ହୋଇଛି, କ୍ଷମତାର ଆଚଳ ଫଳକୁ ଏକାକୀ ଭୋଗ କରିବାପାଇଁ ଅନ୍ୟମାନଙ୍କୁ ହତ୍ୟା କରୁଛି, ଜେଲ ଦଣ୍ଡ ଦେଉଛି, ନିର୍ବାସିତ କରୁଛି ବିପ୍ଳବର ନାମରେ । ଆଲୁଅର ସ୍ଲୋଗାନ ଦେଇ ଅନ୍ଧାରର ସ୍ୱାଗତ କରୁଛି, ଛିନ୍ନ ବିପ୍ଳବର ଧ୍ୱଜା ଉଚ୍ଚରେ ଉଡ଼ାଉଛି ।

ପୁଣି ଯନ୍ତ୍ରଣା ମୋର ଛାତି ଭିତରେ ସକ୍ରିୟ ହୋଇଉଠିଲାଣି । ମୋର ମନେ ହେଉଛି, ସେ ପୁରର ଡ଼ାକର ଅସିବାକୁ ଆଉ ବିଳମ୍ବ ନାହିଁ ।

ବହୁତ କିଛି ଲେଖିବାକୁ ଇଚ୍ଛା ଥିଲା । ଇଟାପରେ ଇଟା ଥୋଇ ଆମେ ଝଡ଼ର ଭିତରେ ଏକ ବିପ୍ଳବ ସଉଧ ଗଢ଼ୁଥିଲୁ, ଆନ୍ଦୋଳନର ଦହକୁଥିବା ଅଙ୍ଗାରରେ ଥୋଇ ଆମେ କପଟ ସ୍ୱାର୍ଥକର୍ମୀଙ୍କୁ ଆବିଷ୍କାର କରୁଥିଲୁ ଓ ପରଖି ନଉଥିଲୁ; ଏ ସମସ୍ତ ଆଜ ଲୋକଲୋଚନକୁ ଆସିପାରିବନି ।

ଗତ କଷ୍ଟୁ ଦିନ ବଙ୍କେ ବହୁତ କଥା ଲେଖିଛି । ମୁଁ ଯାହା ଲେଖିଛି, ସେଥିରେ ମୁଁ ନିଜେ ସନ୍ତୁଷ୍ଟ ନୁହେଁ । ଆହୁରି ବହୁତ କଥା ରହି ଯାଇଛି । ଆହୁରି ବହୁତ ଭାବନା ବନ୍ଦୀଶାଳାରୁ ଝାଙ୍କି ମାରୁଛି । ବୋଧହୁଏ ସେ ସବୁ ଆଉ ଲୁମିଷ୍ଟ ହେବାର ସୁଯୋଗ ଆସିବନି ।

ଓ୍ୱାର୍ଡ଼ର୍‌ର ଚକ୍ଷୁରେ ଉତ୍ତେଜନାର ଝଲକ ଦେଖିଛି । କଣ ଘଟିଛି ପଚାରିବାର ଅଧିକାର ମୋର ନାହିଁ ।

ନା, ଆଉ ଲେଖନୀ ଚଳାଇବାକୁ ମୋର ଶକ୍ତି ନାହିଁ । ଏଥର ମୋର ଦରକାର ବିଶ୍ରାମ ।

---

# ଦେବବାଲାଙ୍କ ଆତ୍ମ ଜୀବନୀ

*To be or not to be*
*That is the question.*

**Shakespeare**

ବଞ୍ଚିବା କି ମରିବା,
ତାହାହିଁ ପ୍ରଶ୍ନ

—ସେକ୍‌ସପିଅର

ଅଃ ! କି ଯନ୍ତ୍ରଣା !

ଫୋଡ଼ା ମନ ଓ ଭଙ୍ଗା ହୃଦୟ ନେଇ ଏକ ସୁଖୀ ଜୀବନର ମୁଖା ପିନ୍ଧିବା । ଧୂପ ଭଳି ଜଳି ଜଳି କେବେକେ ଅନ୍ୟକୁ ଗନ୍ଧରେ ଆମୋଦିତ କରିବା ଓ ବେଦନର ଆଭାସ ନ ଦେବା ।

ମୁଁ ଆଉ ପାରୁନି !

ହାତ ପାଖରେ ବିଳାସର ସମସ୍ତ ଉପକରଣ ।

ଅତୀତରେ ଯାହାଥିଲା ନବାବ୍ ଓ ବାଦ୍‌ଶାହାଙ୍କ ସ୍ୱପ୍ନ ସେ ସବୁ ମୋ ହାତ ପହଞ୍ଚ ଭିତରେ ।

ଆଉ କ୍ଷମତା ?

ଅମାପ, ଅପରିସୀମ, ଅପ୍ରତିରୋଧ !

ଅଭିନୟ ! ପ୍ରତି ମିନଟ୍, ପ୍ରତି ସେକେଣ୍ଡରେ ଅଭିନୟ !

ଖବର କାଗଜରେ ପ୍ରଶଂସାର ଅସଂଖ୍ୟ ଫୁଲ !

ଆଃ ! ମିଥ୍ୟା ମହଲର ବାସିନ୍ଦା ମୋ ଯନ୍ତ୍ରଣାର ଏକ ସହସ୍ରାଂଶ ଯଦି କେହି ବୁଝିପାରନ୍ତେ !

ନା କେହି ନାହାନ୍ତି । ଏ ନିର୍ଜନ ପ୍ରହରରେ କେବଳ ମୁଁ ସୁଯୋଗ ପାଇଛି ସାଉଁଳିବା ପାଇଁ ମୋର ପ୍ରତି ମୁହୂର୍ତ୍ତ ରକ୍ତ ଝରା କ୍ଷତ ଗୁଡ଼ିକୁ ।

ମୋର ବେଦନା ଜର୍ଜରିତ ହୃଦୟ ସମ୍ପର୍କରେ ପ୍ରଧାନମନ୍ତ୍ରୀ ବୋଧହୁଏ ଜାଣିପାରିଛନ୍ତି ।

ସମ୍ଭବତଃ ତାଙ୍କର ମନରେ ମଧ୍ୟ କିଛି ଅନୁତାପ ତାର ଆସନ ବସାଇ ବସିଚ ।

ମୋର ମନେ ପଡ଼ଯାଇଚ ଅଣ୍ଟାଚର ସେହି ପଥଦର୍ଶୀ ଦିନ ଗୁଡ଼ିକ । ବୃମୀଶକାଙ୍କ ମୃତ୍ୟୁପରେ ତାଙ୍କ ପତ୍ନୀ ଭାବରେ ମୋର ଜନପ୍ରିୟତା ଥିଲା ସର୍ବୋଚ୍ଚ ଶିଖରରେ । ଶାସକ ଦଳ ସହ ଆମ ଦଳ ମିଶାଇ ଦେବା ନିଷ୍ପତ୍ତି ମୁଁ ନେଲାପରେ ପ୍ରଧାନମନ୍ତ୍ରୀ ଘୋଷଣା କରିଥିଲେ ମତେ ଉପଦଳପତି ଦାୟିତ୍ୱ ଅର୍ପଣ କରୁଯାଉଛି । ମନ୍ତ୍ରୀ ମଣ୍ଡଳରେ ଅର୍ଥ ବିଭାଗର ଦାୟୀତ୍ୱ ଗ୍ରହଣ ପାଇଁ ପ୍ରଧାନମନ୍ତ୍ରୀ ମତେ ଅନୁରୋଧ କରିଥିଲେ । କାହିଁକି କେଜାଣି ମୋ ମନ ସେତେବେଳେ ଅତି ମାତ୍ରାରେ ବ୍ୟଗ୍ର ହୋଇ ଉଠିଥିଲା । ସ୍ୱରାଷ୍ଟ୍ର ବିଭାଗ ହାତକୁ ନେବାପାଇଁ ।

ସମ୍ଭବତଃ ଅତୀତର ଅନୁଭୂତି ଯୋଗୁ ପୋଲିସ ବିଭାଗରେ କିଛି ସଂସ୍କାର ଆଣିବାକୁ ମୁଁ ବ୍ୟାକୁଳ ଥିଲି । ପ୍ରଧାନମନ୍ତ୍ରୀ ପ୍ରଥମେ ନାରାଜ ହେଲେ ମଧ୍ୟ ଶେଷରେ ମୋର ଜିଦ୍ ପାଖରେ ପରାଜୟ ମାନିନେଲେ । ଏବେ ଦଳର ବଡ଼ ବଡ଼ ପଣ୍ଡାମାନେ ମୋ ଉପରେ ଭୟଙ୍କର ଭାବରେ ଅସନ୍ତୁଷ୍ଟ ।

କିନ୍ତୁ ସେମାନଙ୍କର କିଛି କରିବାର ସାଧ୍ୟ ନାହିଁ ।

ଏବେ ବି ଭାରତର ଜନତା ମୋତେ ପ୍ରଚଣ୍ଡ ଭାବରେ ଭଲପାଉଚ । ଦଳର ଖ୍ୟାତି ହ୍ରାସ ହେବା ସଙ୍ଗେ ସଙ୍ଗେ ମୋର ଜନପ୍ରିୟତା ଅସମ୍ଭବ ଭାବରେ ବଢ଼ି ବଢ଼ି ଚାଲିଛି ।

ଆସନ୍ତା ନିର୍ବାଚନରେ ମୁଁ ଭାଗ ନେବିନାହିଁ ଏବଂ ଏ ସମ୍ବାଦ ଶେଷ ପର୍ଯ୍ୟନ୍ତ ମୁଁ ଦଳର ନେତାମାନଙ୍କୁ ଜଣାଇବି ନାହିଁ ।

ମୁଁ ଜାଣେ ମୋତେ ନିର୍ବାଚନ ଅଙ୍ଗନକୁ ଆଣିବା ପାଇଁ ଦଳପକ୍ଷରୁ ସର୍ବୁମନ୍ତେ ଉଦ୍ୟମ ହେବ ।

କିନ୍ତୁ ମୋର ନିଷ୍ପତ୍ତି ଅପରିବର୍ତ୍ତନୀୟ ।

ପାପର ମାତ୍ରା ମୋର ବହୁତ ବଢ଼ିଗଲାଣି । ଏଥର ସ୍ୱଲୋଭନ ମୋତେ ତ୍ୟାଗ କରିବାକୁ ପଡ଼ିବ ।

ଭାରତର ଲୋକେ ଆଜି ସାବାଳକ ହେଲେ ନାହିଁ ସେମାନେ ସେଇ ପିଲାଘରରେ ହିଁ ରହିଗଲେ ।

ସେମାନଙ୍କର ଅଖଣ୍ଡ ବିଶ୍ୱାସ କିଏ ଜଣେ ତ୍ରାଣକର୍ତ୍ତା ସେମାନଙ୍କୁ ଉଦ୍ଧାର କରିବ ।

ନିଷ୍ପତ୍ତି ନବାର ଜଞ୍ଜାଳରୁ ମୁକ୍ତି ପାଇବା ପାଇଁ ସେମାନେ ତତ୍ପରତାର ଖୋଜ କରିଚନ୍ତି ଜଣେ ସୁପରମ୍ୟାନ୍ ବ୍ୟକ୍ତିତ୍ୱକୁ । କିଏ ଉଠାଇବ ଏ ଦେଶକୁ ?

ମୁଁ, ପ୍ରଧାନମନ୍ତ୍ରୀ ନା ଅନ୍ୟ ଜଣେ କେହି ?

କାହିଁକି ଏ ଦେଶ ଏତେବଡ ଭୁଲ୍ କରୁଚି ?

ଜଣେ ନେତା ଉପରେ ଅକୁଣ୍ଠ ବିଶ୍ୱାସ କାହିଁକି ଏ ଦେଶର ଅସ୍ଥି ମଜ୍ଜାଗତ ହୋଇଯାଇଚି ?

ସମ୍ଭବତଃ ଯୁଗଯୁଗ ଧରି ଏଠାର ପରମ୍ପରା ଓ ଐତିହ୍ୟରେ କେବଳ ଏଇ ଧାରା ହିଁ ପ୍ରବାହିତ ହୋଇଛି ।

ପରିତ୍ରାଣାୟ ସାଧୁନାଂ ବିନାଶାୟଚ ଦୁଷ୍କୃତାଂ
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେଯୁଗେ ।

ସେ ଆସିବ ! ଧର୍ମର ଗ୍ଲାନିକୁ ସମାପ୍ତ କରିଦବାପାଇଁ ଆସିବ ! ଅଧର୍ମର ଧ୍ୱଜାକୁ କବଳସ୍ଥ କରିଦେବାପାଇଁ ଆସିବ । ବିଶ୍ୱବ୍ରହ୍ମାଣ୍ଡ ଯା ପକ୍ଷରେ ଅକଳ୍ପିତ କରି, ସେ ପ୍ରତିଶୃତିଦେଇଚି । ତା କଥା ମିଥ୍ୟା ହୋଇପାରେନା ।

ସେଇ ସହସ୍ର ସୂର୍ଯ୍ୟ ତେଜୋଜ୍ଜ୍ୱଳ ପରମପୁରୁଷର ଅସାଧ କିଛି ନାହିଁ ! ତେଣୁ ଚିନ୍ତାର କରିବାର କିଛି ନାହିଁ !

ଚୁପ୍‌ଚାପ ଶୋଇଯାଅ । କର୍ମଚିନ୍ତାର ଦୂର୍ଦ୍ଦିନ ମଧ୍ୟରେ ସେଇ ମୁହୂର୍ତ୍ତକୁ ଅପେକ୍ଷା କରି ଶୋଇଯାଅ ।

କାହିଁକି ? କାହିଁକି ଆମର ସେଇ ପଣ୍ଡିତ ପୂର୍ବପୁରୁଷମାନେ ନଷ୍ଟ କରିଦେଲେ ଏ ଦେଶକୁ ?

କାହିଁକି ସେମାନେ କରିଦେଇଗଲେ ଆମକୁ ଚରମ ଭାଗ୍ୟବାଦୀ ? ଆପଣାର ସବଳ ହସ୍ତରେ ସମାଜ ଗଢ଼ିବାର ଅଦମ୍ୟ ସ୍ପୃହା ସେମାନେ କାହିଁକି କାଢ଼ି ନେଇଗଲେ ଆମ ମନରୁ ? ମାନସିକ ଶୂନ୍ୟତା ଭିତରେ ଏ ସମାଜ ଖୋଜୁଛି ସୁପର୍‌ମ୍ୟାନ୍‌କୁ ।

ମୁଁ ଆଜି ସେଇ ସୁପର୍‌ମ୍ୟାନ୍ ନା ସୁପରଓ୍ୱୁମାନ୍ ?

ନା, ଆଜି ତାକତ ନାହିଁ, ଆଗ୍ରହ ନାହିଁ ସୁପର୍‌ମ୍ୟାନ୍ ହେବାକୁ । ଆଉ ଇଚ୍ଛା ନାହିଁ ପୁଣି ପାଞ୍ଚବର୍ଷ ପାଇଁ ଗୋଟିଏ ଜାତିର ଭାଗ୍ୟରଙ୍ଗାର ମଙ୍ଗ ମୋଡ଼ିବାକୁ !

ଦଳ ଯଥେଷ୍ଟ ଇଙ୍ଗିତ ଦେଇସାରିଲଣି ଯେ ଏଥର ସେମାନେ ସମସ୍ତ ଶକ୍ତି ମୋ ହାତରେ କେନ୍ଦ୍ରିତ କରିଦେବେ ।

ସ୍ୱୟଂ ପ୍ରଧାନମନ୍ତ୍ରୀ ବି କହିସାରିଲେଣି ସେ ନୂତନ ସ୍ୱଗରେ ଭାର ଅର୍ପଣ କରିବାକୁ ବ୍ୟାକୁଳ ।

ହଁ, ମୁଁ ନେଇପାଆନ୍ତି ଏଭାର, ଯଦି ମୋର ବିଶ୍ୱାସଥାଆନ୍ତା । ମୋ ଜଣକ ଦ୍ୱାରା ଏ ଦେଶର ଭବିଷ୍ୟତ ଉଜ୍ଜ୍ୱଳ ହୋଇପାରିବ ।

ନା, ତା ସମ୍ଭବ ନୁହେ ।

କୌଣସି ସୁପର୍‌ମ୍ୟାନ୍ କୌଣସି ଜାତିକୁ ଉଠାଇପାରେନା । ଅଗଣିତ ଶାନ୍ତିକାମୀ ଯୁବକ, ଅସଂଖ୍ୟ ତ୍ୟାଗୀ ମଣିଷହିଁ ଜାତିକୁ ଦେଖାଇପାରନ୍ତି ମୁକ୍ତିର ପଥ ।

ମୋର ନିଜସ୍ୱ ଶକ୍ତି ବା କେତେ ରହିଛି ?

ସ୍ୱାମୀରିକାଙ୍କ ସହଧର୍ମିଣୀ ଭାବରେ ମୁଁ ଆସନ ଲାଭ କରିଛି ଓ ଦେଶ ବାସୀଙ୍କ ଶ୍ରଦ୍ଧା ଓ ସହାନୁଭୂତି ବିପୁଳ ମାତ୍ରାରେ ପାଇଛି ।

ଧୀରେ ଧୀରେ ମୁଁ ଅନୁଭବ କରୁଛି ମୁଁ ଗୋଟିଏ ବରଗଛରେ ପରିଣତ ହୋଇ ଯାଉଛି ।

ମୋ ଘରରେ ଆଜ କୌଣସି ଆଲୋକ ସ୍ୱାଗତକାରୀ ଗଛ ଉଧାଇ ପାରିବେ ନାହିଁ ।

ମୋ ବୃକ୍ଷପାଖରେ ଜମି ଯାଇଛି ସାଇକୋଫାଣ୍ଟ ଗ୍ରନ୍ଥ ମାନଙ୍କର ଶୋଭାଯାତ୍ରା । ମୋର ଜନପ୍ରିୟତା ବ୍ୟବହାର କରି ଗୁଡ଼ାଏ ଗାଛ ବପୁସ ଜରଦ୍‌ଗବ ଓ ଭୋଗଧର୍ମୀ ଯୁବକ ସାରା ଦେଶକୁ ଲୁଣ୍ଠନ କରୁଛନ୍ତି ।

କ୍ଷମତାର ନିଶା କି ଚମତ୍କାର । ଥରେ ଯେ ତାକୁ ଚାଖିଛି, ସେ ତାକୁ ସହଜରେ ଛାଡ଼ିବାପାଇଁ ପ୍ରସ୍ତୁତ ହୁଏନ ।

ଥରେ ଯେ ରଜା ହୋଇପାରିଛି, ସେ କେବେ ରାଜଗାଦି ଛାଡ଼ିବାପାଇଁ ଇଚ୍ଛା କରିବନି ।

ଲେଖକଙ୍କର ଦାୟିତ୍ୱହୀନତାର ଆକାଂକ୍ଷା କି ତୀବ୍ର ? ଦାୟିତ୍ୱର ବୋଝ ଖୁବ୍ ବେଦନାଦାୟକ ! ଦାୟିତ୍ୱବୋଧ ଚକ୍ଷୁରୁ ନିଦ କାଢ଼ିନିଏ ।

ତେଣୁ ଦାୟିତ୍ୱର ବୋଝକୁ ତଳେ ଥୋଇଦିଅ, ଆରାମ୍ ପାଇବ । ସେ ବୋଝ ବୁହନ୍ତୁ ନେତା, ପୁରୋହିତ, ସ୍ପେଶାଲିଷ୍ଟ ଓ ଏକ୍ସପର୍ଟ ମାନେ ।

ମଣିଷ କ'ଣ ସ୍ୱାଧୀନତା ଚାହେଁନା ? ଚିନ୍ତା କରିବାର ସ୍ୱାଧୀନତା କ'ଣ ତା ପକ୍ଷରେ ଏତେ କଷ୍ଟକର ।

ଯୁଗେ ଯୁଗେ ମଣିଷ ସୃଷ୍ଟି କରିଛି ଖୋଳ । ଧର୍ମ, ମତ, ସାମନ୍ତବାଦୀ ଆନୁଗତ୍ୟର ଖୋଳ ।

ସେଇ ଖୋଳ ଭିତରେ ହୋଇଉଠିଛି ସେ ଜନ-ମଣିଷ, ମାସ୍ ମ୍ୟାନ୍ । ପୃଥିବୀର ସବୁଠାରୁ ଗଣତାନ୍ତ୍ରିକ ଜାତି ଉପ୍ୟାନନ୍ଦ ଭାବରେ ବେଯ୍ୟାଳିଷ୍ଟ । ଇଂଲଣ୍ଡରେ ରାଜପଦ ସବୁଠାରୁ ସମ୍ମାନଜନକ ଅନୁଷ୍ଠାନ ।

ଜର୍ମାନ ! କି ଭୟଙ୍କର କର୍ମନିଷ୍ଠ ସେ ଜାତିର ! ତଥାପି ସେ ଜାତିର ଢଗ୍‌ବଳପ୍ୟକୁ ଦୂଷିତ କଲା ହିଟ୍‌ଲର୍‌ର କଳା ଛାୟା ।

ପୃଥିବୀର ସବୁଠାରେ ମଣିଷର ମନ ଅସହାୟ । ଏଇ ଅସହାୟତାରୁ ରକ୍ଷା ପାଇବା ପାଇଁ ସେ କଳ୍ପନା କରେ ଉଦ୍ଧାରକ ପୁରୁଷର । ବହୁ ଶତାବ୍ଦୀର ସଂଗ୍ରାମ ପରେ ପୃଥିବୀରୁ ଅତ୍ୟାଚାରୀ ରଜାମାନେ ଉଭେଇ ଯାଇଛନ୍ତି ।

ଏ ରାଜାମାନଙ୍କର ସ୍ଥାନ ଗ୍ରହଣ କରିଚନ୍ତି କ୍ଷମତାଲୋଭୀ ନେତାମାନେ, ଭୟାନକ, ଦୁର୍ଦ୍ଧର୍ଷ ଏବଂ ଆପଣା ଶକ୍ତି ସମ୍ପର୍କରେ ଅତି ମାତ୍ରାତ୍ମକ ଭାବରେ ଆସ୍ଥାଶୀଳ ।

ଆତ୍ମସମ୍ମାନୀମାନେ ବହୁତ ସ୍ବଳ୍ପ ଅଛନ୍ତି । ସେମାନେ କଳ୍ପନା କରନ୍ତି କୌଣସି ବ୍ୟକ୍ତି ଦୁଇଥର ଯେ ଦେଶର ପ୍ରେସିଡେଣ୍ଟ ହୋଇପାରିବ ।

ଲୋକେ କହୁଚନ୍ତି ମୋ ପାଖରେ ବିରାଟ ଯାଦୁଶକ୍ତି ରହିଚି । କାହିଁ ? ମୁଁ କ୍ଷମତାକୁ ଆସିବା ପୂର୍ବରୁ ତ ଏ ଯାଦୁଶକ୍ତି ଲୋକେ ମୋ ପାଖରେ ଦେଖିନଥିଲେ । ଅନୁଭୂତିର ଅଗ୍ନିରେ ଜଳପୋଡ଼ି ମୁଁ ଜ୍ଞାନଲାଭ କରିଚି, ଦିବ୍ୟ ଦୃଷ୍ଟି ପାଇଚି ।

ମୁଷ୍ଟିମେୟ ନେତାଙ୍କ ଉପରେ ନିର୍ଭରଶୀଳ ଏ ପୃଥିବୀ ଧ୍ୱଂସ ମୁଖକୁ ଦ୍ରୁତଗତିରେ ଆଗେଇ ଚାଲିଚି ।

ଆତ୍ମସମର୍ପଣ ଭାବକୁ ପ୍ରାଧାନ୍ୟ ଦେଉଥିବା ଧର୍ମ, ମତ, ରାଜନୀତି ସମସ୍ତେ ମଣିଷ ବିରୁଦ୍ଧରେ ଷଡ଼ଯନ୍ତ୍ର କରିଚନ୍ତି ।

ମୋର ସମସ୍ତ ଜନପ୍ରିୟତା ଓ କ୍ଷମତା ସତ୍ତ୍ୱେ ମୁଁ ମଧ୍ୟ ଅସହାୟ । ଲୋକେ ପୁଂଜିପତି, ବୁଦ୍ଧିଆ ଦଲାଲଙ୍କ ବିରୁଦ୍ଧରେ ଯିବା ମୋ ପକ୍ଷରେ ମଧ୍ୟ ସମ୍ଭବ ନୁହେଁ । ରକ୍ତ, ମାଂସ ଦେହ ଧରି ମୋର ଭାବମୂର୍ତ୍ତିର ସମାଧି ମୁଁ ସହିପାରିବିନି । ତେଣୁ ମୋର ପାପର ଜୀବନ୍ତ ସାକ୍ଷୀ ସାଙ୍କେତଶର୍ମାଙ୍କୁ ମୁଁ ମୁକ୍ତିର ଆଦେଶ ଦେଇପାରୁନି ।

ମୋତେ ଚିରଦିନ ନେତା ହୋଇ ରହିବାକୁ ପଡ଼ିବ ।

ଏ ରୂପ, ରସ, ଗନ୍ଧର ପୃଥିବୀ; ଏଇ ପ୍ରଶସ୍ତ, ସୁନ୍ଦର ଉଦାର ଆକାଶ; ଏଇ ନୀଳ ସଦାଚଞ୍ଚଳ ସାଗର; ଏମାନେ ସମସ୍ତେ ମୋ ପକ୍ଷରେ ଦୁଷ୍ପ୍ରାପ୍ୟ ହୋଇଯିବେ ।

ଆଃ ! ମୁଁ ଯଦି ନାସ୍ତିକ ହୋଇପାରନ୍ତି ସେ ପାରିରେ ଏକ ସୁନ୍ଦର ଜଗତ ରହିଚି ।

ଅସଂଖ୍ୟ ଭଙ୍ଗା ସ୍ୱପ୍ନ ! ଅସଂଖ୍ୟ ଲୁଣ୍ଠିତ ଆଦର୍ଶ । A heap of broken images ! ଏଇ ହେଉଛି ମୋର ଜୀବନ ।

ତଥାପି ମୁଁ ଏ ଜୀବନଠାରୁ ବିଦାୟ ନେବାକୁ ଚାହୁଁନ ।

ତାହେଲେ ପାପର ଓ ଗ୍ଲାନିର ବୋଝ ବହନ କରି ପୁଣି ହସ ହସ ମୁଖରେ ମୁଁ ରାଜନୀତିର ରଙ୍ଗମଞ୍ଚ ଉପରେ ଠିଆ ହେବ ?

ମୋ ସ୍ୱାମୀଙ୍କର ଆଦର୍ଶବାଦୀ ତରୁଣମାନଙ୍କୁ ପୁଣି ଥରେ ପରାଜୟର ଗଭୀର ଆବର୍ତ୍ତ ଭିତରକୁ ଠେଲିଦେବ ?

ଗୌତମ, ରମକୃଷ୍ଣନ୍, ୟୁସୁଫ୍‌ଙ୍କ ସ୍ୱପ୍ନକୁ ପୁଣି ଥରେ ପାଞ୍ଚବର୍ଷପାଇଁ ସମାଧିସ୍ଥ କରିଦେବ !

ତମର ଦୁଇଟି ଉଜ୍ଜ୍ୱଳ ଚକ୍ଷୁ ମୋ ଉପରେ କାହିଁକି ନିବଦ୍ଧ କରୁଛ ଝୁମୀରିକା ? ତମେ କ'ଣ ଲେଡ଼ିମ୍ୟାକ୍‌ବେଥ୍‌ଭଳି ମୋର ପାଗଳରୂପ ଦେଖିବାକୁ ଚାହଁ ?

ଏ ବିଂଶ ଶତାବ୍ଦୀ ଝୁମୀରିକା ! ଏ ଶତାବ୍ଦୀରେ ଲେଡି ମ୍ୟାକ୍‌ବେଥ୍ ଭଳି ଦୋଷ-ବୋଧ ଆସିବ କେଉଁଠୁ ?

ମୋର ଟଙ୍କା ସାହାଯ୍ୟରେ ମୋ ଦଳ ନିଶ୍ଚୟ ଶୋଚନୀୟ ଭାବରେ ପରାଜିତ ହେବ ।

ତାପରେ...... ତା ପରେ ଗୌତମ, ରମକୃଷ୍ଣନ୍, ୟୁସୁଫ୍‌ଙ୍କ ହାତକୁ ଚାଲିଯିବ ଶାସନ ଭାର ? ତାପରେ ହୁଏତ ଗୌତମ ହୋଇଉଠିବ ଏକ ସୁପର୍‌ମ୍ୟାନ୍ ଏବଂ ସାରା ଭାରତ ଦୁଃଖ, ଦାରିଦ୍ର୍ୟ, ଦୁର୍ଦ୍ଦଶା ଭିତରେ ସଢ଼ୁଥିଲା ବେଳେ ସେ ହୁଏତ ରଙ୍ଗିନ୍ ସ୍ୱପ୍ନ ଦେଖୁଥିବ ବଂଶଗତ ଶାସନର ।

ଏ ଦୈନ୍ୟଭରା ଯାତ୍ରାର କ'ଣ ସମାପ୍ତି ନାହିଁ ? କଳ୍ପନା ବହୁତ ଆଗକୁ ଚାଲିଯାଉଛି ।

ଶାସନ ବଦଳିବାପରେ ସେମାନେ ଜାଣିବାକୁ ପାଇବେ ମୋର ଜନକଙ୍କର ବିଭୀଷିକାଗ୍ରସ୍ତ ଗାଥା ।

ମୁଁ ତାଙ୍କୁ କ'ଣ ନିଶ୍ଚିହ୍ନ କରିପାରିବିନି ?

ହଁ, ପାରନ୍ତି । କିନ୍ତୁ ଏତେ ବର୍ଷ ନେହେରୁଙ୍କର ଉଚ୍ଚ ଆଦର୍ଶ ଉପରେ ଆସ୍ଥା ନହରାଇଥିବା ସାକେତ ଶର୍ମାଙ୍କୁ ମୁଁ କେମିତି ଧରା ବକ୍ଷରୁ ବିଦାୟ ଦେଇଦେବି ?

ଶାସକଗୋଷ୍ଠୀ ଯେତେବେଳେ ଜାଣିବେ କି ଗଭୀର ଷଡ଼ଯନ୍ତ୍ରରେ ମୁଁ ସଂଶ୍ଳିଷ୍ଟ, ସେତେବେଳେ କି ପ୍ରତିକ୍ରିୟା ହେବ ସେମାନଙ୍କର ?

ସେମାନେ କ'ଣ ବୁଝିପାରିବେ କି ଦପ୍ତରୀୟ ପରିସ୍ଥିତିରେ ପଡ଼ି ମୋ ଅଜ୍ଞାତସାରରେ ମୁଁ ଏକ ଷଡ଼ଯନ୍ତ୍ରର ଅନ୍ୟତମ ନାୟିକା ହୋଇଗଲି ?

ସେ କ'ଣ ଚିନ୍ତା କରିପାରିବେ କିଭଳି ଦେଶ ମଙ୍ଗଳର ଶୁଭକାମନା ଦ୍ୱାରା ପ୍ରଭାବିତ ହୋଇ ମୁଁ ଏଭଳି ଏକ ସନ୍ଦେହାତ୍ମକ କାରବାର କରିବସିଲି ?

ମୁଁ ଜାଣେ ସାକେତ ଶର୍ମା ତାଙ୍କ ଜୀବନୀ ଲେଖୁଛନ୍ତି ତାଙ୍କ ଜୀବନୀ ଲେଖିବାର ସମସ୍ତ ସୁଯୋଗ ମୁଁ ନିଜେ ତାଙ୍କୁ ଦେଇଛି ।

ସେ ଜୀବନୀ ନଷ୍ଟ କରିବାପାଇଁ ମୁଁ ସାମାନ୍ୟତମ ଚେଷ୍ଟା ମଧ୍ୟ କରିବିନି ।

କିନ୍ତୁ ଡିକେନ୍ସଙ୍କ ଚରିତ୍ର ମେନେଟ୍‌ଙ୍କର ଡ଼ାଏରୀଭଳି ସେ ଜୀବନୀ ମୋର ସମସ୍ତ ଭବିଷ୍ୟତକୁ ପୋଡ଼ି ଜାଳିଦେବ ।

ମୁଁ ହେବି ଜନତା ଚକ୍ଷୁରେ ଡ଼ାକିନୀ, ପାପିୟସୀ । ଆତ୍ମହତ୍ୟା ବି ମୋତେ ଏ ନିନ୍ଦାରୁ ନିଷ୍କୃତି ଦେଇପାରିବନି ।

O God ! Horatio ! What a wounded name !
Things standing thus unknown, behind me.

ହେ ଭଗବାନ ! ହୋରାସିଓ ! କି ଆହତ ନାମ ଛାଡ଼ିଯିବି ମୁଁ ?
କେହି ଜାଣିବେନି କି ଘଟଣାମାନ ଘଟିଯାଇଥିଲା...

କି ଗଭୀର ବେଦନାରେ ଡେନ୍‌ମାର୍କର ରାଜକୁମାର ହ୍ୟାମ୍‌ଲେଟ୍ ମୃତ୍ୟୁର ଅବ୍ୟବହିତ ମୁହୂର୍ତ୍ତରେ ଏ ପଂକ୍ତିଗୁଡ଼ିକ କହିଥିଲେ ବନ୍ଧୁ ହୋରାସିଓଙ୍କୁ ।

What a wounded name ? ଏକ ଆହତ ନାମ ଯୁଗଯୁଗ ଧରି ପଡ଼ି ରହିବ ଭାବି ଯନ୍ତ୍ରଣାକ୍ଳିଷ୍ଟ ରାଜକୁମାର ହ୍ୟାମ୍‌ଲେଟ୍ ମରଣପାଇଁ ଉନ୍ମୁଖ ବନ୍ଧୁ ହୋରାସିଓଙ୍କ ହାତରୁ ବିଷପାତ୍ର ଟାଣି ନେଇଯାଇଥିଲେ ।

ହେ ବନ୍ଧୁ ହୋରସିଓ ! ଯଦି କେବେ ମନରେ କେବେ ହୃଦୟରେ ସ୍ଥାନ ଦେଇଥାଅ, ତେବେ କିଛି ସମୟପାଇଁ ନିଜକୁ ବଞ୍ଚିତ କର ଆମୋଦ ଓ ଆନନ୍ଦମୟ ମୁହୂର୍ତ୍ତଗୁଡ଼ିକରୁ ।

Absent thee from felicity a while !

ହ୍ୟାମ୍‌ଲେଟ୍‌ଙ୍କ ଏ ନିର୍ଦ୍ଦେଶ ବିଶ୍ୱ ସାହିତ୍ୟର ଅମର ପଂକ୍ତି ।

ମୋର ମୃତ୍ୟୁପରେ ମୋର କରୁଣ କାହାଣୀ କହିବାକୁ ହୋରସିଓ କାହାକୁ ଯେ କି ଏଇ ନିଷ୍ଠୁର ଦୁନିଆରେ କଷ୍ଟଯୁକ୍ତ ନିଃଶ୍ୱାସ ନେଉଥାନ୍ତେ ମୋତେ ମନେ ପକାଇ ।

And in the harsh world draw thy breath in pain.

ମୁଁ କାହାକୁ କହିପାରିବିନି ।

ତେଣୁ ମୁଁ ଲେଖିବି । ଜେଲର ନିଭୃତ କୋଠରୀରେ ସଡ଼ୁଥିବା ସାକେତ ଶର୍ମାଙ୍କର ପାଣ୍ଡୁଲିପିର ଶବ୍ଦମାନଙ୍କରେ ନିଃଶେଷ ହୋଇଯିବାର ଯନ୍ତ୍ରଣାରୁ ନିଷ୍କୃତି ପାଇବାପାଇଁ ଲେଖିବି ।

ଜାପାନର ଅଭିଜାତ ସମ୍ପ୍ରଦାୟ ସାମୁରାଇମାନଙ୍କର ଇତିହାସ ମୁଁ ପଢ଼ିଛି । ସ୍ୱେଚ୍ଛାରେ ହରାକିରି କରୁଥିବା ଏଇ ବୀରମାନଙ୍କର କାହାଣୀ ମୋତେ ଅଭିଭୂତ କରିଛି । ଏଇ ନେଇ ଜାପାନର ଅନ୍ୟତମ ଶ୍ରେଷ୍ଠ ଲେଖକ ୟୁକିଓ ମିଶିମାଙ୍କର ଜୀବନୀ ପଢ଼ୁଥିଲି । ଏଇ ପ୍ରସିଦ୍ଧ ଔପନ୍ୟାସିକ ଜାପାନର ନବ-ଜାଗରଣପାଇଁ ଅକ୍ଳାନ୍ତ ଉଦ୍ୟମୀ ଥିଲେ । ତାଙ୍କର ଏକ କଠିନତମ ମୁହୂର୍ତ୍ତରେ ସାରା ଜାତିକୁ ଅଭ୍ୟୁଦୟର ବାର୍ତ୍ତା ଦେବାଲାଗି ସେ ହରାକିରି କରି ଦେଇଥିଲେ ।

ହରାକିରି କି ଯନ୍ତ୍ରଣାଦାୟକ । ଖଞ୍ଜରର ପେଟକୁ ଛୁରି ସାହାଯ୍ୟରେ ବିଦୀର୍ଣ୍ଣକରି ନିଜର ଅନ୍ତ ବୁଜୁଳାକୁ ଅନ୍ଧକାରର ଗର୍ଭରୁ ଆଲୋକକୁ ଟାଣି ଆଣିବା କି ଅସୀମ ସାହସ ଓ ଦୃଢ଼ତାର ସୂଚନା ଦିଏ, ତା ଜଣେ ସାଧାରଣ ଲୋକ ବୁଝିପାରିବନି । ଅଥଚ ଏଇ ହରାକିରି ଥିଲା ଜାପାନର ସାମୁରାଇ ସମ୍ପ୍ରଦାୟ ପକ୍ଷରେ ପିଲା ଖେଳ ।

ହରାକିରି କରିବାର ସାହାସ ମୋର ନାହିଁ । ବିଷର ସାହାଯ୍ୟ ନେଇ ମୋତେ ଜୀବନଠାରୁ ଶେଷ ବିଦାୟ ନେବାକୁ ପଡ଼ିବ ।

ଚରମ ନିଃସଙ୍ଗତା ମଧ୍ୟରେ ମୁଁ ଗଡ଼ି ଚାଲିଛି । ଗୋଟିଏ ମୁହୂର୍ତ୍ତର ଭୁଲ ବୁଝାମଣା ଫଳରେ ସାରା ଜୀବନଧରି ଦହନର ଜ୍ୱାଳାରେ ଅସ୍ଥିର ହେଉଛି ।

ମୋତେ କ୍ଷମାକର ତ୍ରମୀଲିକା । ମୋତେ ସେମାନେ ପ୍ରତାରଣା କରିଥିଲେ । ମୁଁ ଜାଣିନଥିଲି ସେମାନେ ତମକୁ ହତ୍ୟା କରିବାପାଇଁ ଷଡ଼ଯନ୍ତ୍ର କରିଛନ୍ତି ।

ତାପରେ ସେଇଦିନ, ଯେଉଁଦିନ ମୁଁ ଶୁଣିଲି ସେମାନେ ତମକୁ କଭଳି ଭାବରେ ହତ୍ୟାକଲେ, ମୋର ହୃତ୍ସ୍ପନ୍ଦନ କିଛି ମୁହୂର୍ତ୍ତପାଇଁ ବନ୍ଦହୋଇ ଯାଇଥିଲା ।

ଆକାଶ, ଧରଣୀ, ବତାସ ସବୁକିଛି ମୋ ପକ୍ଷରେ ନିମ୍ବପତ୍ର ଭଳି ପିତା ହୋଇଯାଇଥିଲେ । ଆତ୍ମହତ୍ୟା କରିବାକୁ ମୁଁ ଭାବିଥିଲି କିନ୍ତୁ ଆତ୍ମହତ୍ୟା ମୁଁ କରିନି, କାରଣ ତମର ଆତତାୟୀମାନେ ସେତେବେଳେ ଜୀବନକୁ ପୂର୍ଣ୍ଣମାତ୍ରାରେ ଉପଭୋଗ କରୁଥିଲେ ।

ତମର ଆତତାୟୀମାନେ ଜଣକପରେ ଜଣେ ମୂଲ୍ୟ ଦେଇଚନ୍ତି ତ୍ରମୀଲିକା; ଯେଉଁ ମୂଲ୍ୟ ସେମାନେ କେବେ ଦେବେ ବୋଲି ଭାବି ନଥିଲେ । ଏକଦା ପ୍ରତିଷ୍ଠା ଓ ଅର୍ଥ ଯେଉଁମାନଙ୍କୁ ଦୋଳି ଝୁଲାଉଥିଲା, ସେମାନେ ଆଜି ଅପାଂକ୍ତେୟ, ଅସ୍ପୃଶ୍ୟ । ସେଇ ମହାତ୍ମାମାନେ ଯେଉଁମାନେ ତମର ଶରୀରକୁ ଗୁଳିବିଦ୍ଧ କରିଥିଲେ, ଆଜି ଜେଲ୍‌ର ସଡ଼ୁଚନ୍ତି । ସେମାନଙ୍କର ପାପକର୍ମ ସେମାନଙ୍କୁ ପତନର ଗହ୍ୱରକୁ ଟାଣି ନେଇଚି । ମୁଁ କେବଳ ନିମିତ୍ତମାତ୍ର ।

ତଣକୁ ମୁଁ ମାରିଲିନି ତ୍ରମୀଲିକା । ସେଠି ହାରିଗଲି ଭଣ୍ଡା ମୋତେ ସାରାଜୀବନଧରି ଯନ୍ତ୍ରଣା ଦେଉଛି । କାହିଁକି କେଜାଣି ପ୍ରଧାନମନ୍ତ୍ରୀଙ୍କୁ ମୁଁ ପ୍ରତିରୋଧ କରି ପାରିଲିନି ।

ମ୍ୟାକ୍‌ବେଥ୍‌ର ଗୋଟିଏ ଦୃଶ୍ୟ ମୋର ମନେଅଛି । ଲେଡ଼ି ମ୍ୟାକ୍‌ବେଥ୍ ବଜ୍ର ନିର୍ଦ୍ଦେଶ ଦେଇଚନ୍ତି ସ୍ୱାମୀ ମ୍ୟାକ୍‌ବେଥ୍‌କୁ ଅତିଥି ରାଜା ଡନ୍‌କାନ୍‌ଙ୍କୁ ହତ୍ୟାକରିବାପାଇଁ । ସେ ନିଜେ ହତ୍ୟାକରିବାକୁ ପ୍ରସ୍ତୁତ ଥିଲେ, କିନ୍ତୁ ତାଙ୍କର

ସ୍ତ୍ରୀକାଟେକୁ 'Had he not resembled my fathar as he slept, I would have done it., ପରିଷ୍କାର କରି ଦେଇଚି କାହିଁକି ସେ ହାତେ ଏ କାର୍ଯ୍ୟ କରିପାରିଲେନି ।

Had he not resembled my father······—ଠିକ୍ ବାପାଙ୍କ ଭଳି ଦିଶୁଥିବା ଜଣେ ଲୋକଙ୍କୁ କେହି କେବେ ହତ୍ୟା କରିପାରେନା ।

ପ୍ରଧାନମନ୍ତ୍ରୀ ମୋ ଆଗରେ ଅଶ୍ରୁପାତ କରିଚନ୍ତି । କହିଚନ୍ତି, 'ମୋତେ ବିଶ୍ୱାସ କର ଦେବକାନ୍ତ । ମୁଁ ତମ ସ୍ୱାମୀଙ୍କ ହତ୍ୟା ଚାହିଁ ନଥିଲି । ସେମାନେ ଠିକ୍ କ୍ୟାଣ୍ଟରବରୀର ମହାନ୍ତ ବେକେଟ୍‌ଙ୍କ ହତ୍ୟାକାରୀଙ୍କ ଭଳି ମୋର ଆଦେଶର ଅପଅର୍ଥ କରିଥିଲେ ।'

ମୁଁ ନିରୁପାୟ ହୋଇଛି । ମୁଁ ନିଃସହାୟ ଭାବରେ ଜୀବନ କଟାଉଛି, ତଥାପି ମୁଁ ଗର୍ବ କରୁଛି ବୃନ୍ଦାବନ ଯେ ତମେ ଶେଷ ପର୍ଯ୍ୟନ୍ତ ସିଂହଭଳି ଲଢ଼ିଛ । ଆଃ ! ମୁଁ ଯଦି ତମର ଯନ୍ତ୍ରଣାର ଭାର ନେଇପାରିଥାନ୍ତି । ନା ! ତମେ ଚାଲିଗଲ ବରଂ ବୈଜୟନ୍ତୀ ଉଡାଇ ଆଜି ମୋପାଇଁ ପଡ଼ିରହିଲା ଏ ଯନ୍ତ୍ରଣାର ଶରଶଯ୍ୟା । ଭୀଷ୍ମଙ୍କଭଳି ମୁଁ ଅପେକ୍ଷାକରି ରହିଚି ସେଇ ଉତ୍ତରାୟଣକୁ । ଯେତେବେଳେ ଏ ଯନ୍ତ୍ରଣାର ଶେଷ ଘଣ୍ଟି ବାଜିଉଠିବ ।

ତମ ଚିତାର ପାଦତଳେ ଦୁଇ ବିନ୍ଦୁ ଅଶ୍ରୁ ଢ଼ାଳିଦେଲି ବେଳେ ମୋର ସବୁବେଳେ ମନେ ପଡ଼ିଯାଇଚନ୍ତି ସାକେତ ଶର୍ମା । ଖୁବ୍ ଏକ ଯନ୍ତ୍ରଣାଦାୟକ ସ୍ଥିତିର ଦଂଶନଭଳି ସାକେତ ଶର୍ମାଙ୍କ ଅଜ୍ଞାତ ଜାରବାସ ମୋତେ ଅବିରତ ବ୍ୟଥାର ଚୁମ୍ବନ ଦେଉଛି । କିନ୍ତୁ ସେଠି ବି ମୁଁ ନିରୁପାୟ ।

ଗ୍ରୀକ୍ ଟ୍ରେଜେଡ଼ିୟାନଙ୍କ ମତରେ ମଣିଷ ଅତ୍ୟନ୍ତ ଅସହାୟ । ସେକ୍‌ସପିଅରଙ୍କ ଭାଷାରେ— As flies to wanton boys, we are to Gods / They kill us for their sport.

ଦେବତାମାନେ ଆମକୁ ହତ୍ୟା କରନ୍ତି ଆମୋଦପାଇଁ ।

ଓଡ଼ିପସ୍, ଯେଉଁ ଅନ୍ଧ ରଜାଟି, କି ଦୋଷ କରିଥିଲା ? କାହିଁକି ସେଇ ସ୍ୱେଚ୍ଛାଚାରୀ ଦେବତାମାନେ ତାକୁ ଏକ କ୍ରୁର ଯନ୍ତ୍ରଣାର ଗହ୍ୱର ଭିତରକୁ ଠେଲିଦେଲେ ?

ଓଡ଼ିପସ୍ ବୀର ଥିଲା, ଶକ୍ତିର ଉତ୍ସ ଥିଲା, ପ୍ରଜାଙ୍କର ହିତାକାଂକ୍ଷୀ ଥିଲା । କାହିଁକି ଏକ ଅଭିଶାପର ଦାବାନଳରେ ଅହରହ ଉତ୍ପୀଡ଼ିତ ହୋଇଉଠିଲା ତାର ଉତ୍ତର କପୁଷ ।

ଆଜି ତାର ସେଇ ସୁନ୍ଦର ଝିଅଟି ! ଏଲେକ୍ଟ୍ରା ! କ'ଣ ଥିଲା ତାର ଅପରାଧ ? ସେ ବି ବାଦ୍ ଗଲାନି କ୍ରୁର ଦେବତାମାନଙ୍କର ଚକ୍ରାନ୍ତରୁ ।

ଗ୍ରୀକ୍ ଟ୍ରାଜେଡିର ଏକ ନାୟକଭଳି ମୁଁ ମଧ୍ୟ ଏକ ଅବଶ୍ୟମ୍ଭାବୀ ପରିଣତି-ଆଡ଼େ ଦୁର୍ଦ୍ଦମନୀୟ ବେଗରେ ଗତିକରି ଚାଲିଛି ।

ସାକେତ ଶର୍ମା ! ସେଇ ନିରୀହ ଅଥଚ ପ୍ରଖର ପ୍ରତିଭାଶାଳୀ ପଚଳା ଯୁବକ ଜଣକ ! ସେ ଏକ ଅଗ୍ନିକଣା ! ତାଙ୍କ କଲମରେ ଯାଦୁ ରହିଛି ।

ସେ ଲେଖୁଛନ୍ତି । ତାଙ୍କ ମନର ହଳାହଳକୁ ସେ ନିକ୍ଷେପ କରୁଛନ୍ତି ତାଙ୍କର ସେଇ ପୁସ୍ତକଟିରେ, ଯାହା ମୋର ଏବଂ ପ୍ରଧାନମନ୍ତ୍ରୀଙ୍କଭଳି କେତେଜଣଙ୍କର ଜୀବନକୁ ନଷ୍ଟ କରିଦେବ ।

ସତ୍ୟ । ହଁ, ସତ୍ୟର ହିଁ ଜୟ ହେଉ । ଭାରତର ଜନସାଧାରଣ ଆଂଶିକ ଚିତ୍ରକୁ ନଦେଖି ପୂର୍ଣ୍ଣାଙ୍ଗ ଚିତ୍ରକୁ ଦେଖନ୍ତୁ ।

ମୋର ହିସାବ ନିକାଶ ଶେଷ ହୋଇଆସିଛି । ଏଥର ମୋର ଜୀବନୀକୁ ଲୋକ ସାମ୍ନାରେ ଥୋଇଦେଲେ ମୋର ଛୁଟି ।

ସ୍ୱାମୀଜୀଙ୍କ ପ୍ରଧାନ ଶିଷ୍ୟମାନଙ୍କ ହାତରେ ହିଁ ମୋର ଜୀବନୀକୁ ଦେଇଯିବି । ମୋର ବିଶ୍ୱାସ ରହିଛି ମୋର ଜୀବନୀକୁ ସେମାନେ ଅଜ୍ଞାତବାସ କରିବାକୁ ଦେବେନାହିଁ । ସ୍ୱାମୀଜୀଙ୍କର ଓ ମୋର ସେଇମାନେ ହିଁ ମାନସ ପୁତ୍ର । ସେମାନଙ୍କର ବିଜୟ ପଥର ସବୁଠାରୁ ବଡ଼ କଣ୍ଟା ହେଉଛି ମୁଁ । ମୁଁ ଅପସରିଯାଇ ସେମାନଙ୍କର ପଥ ପରିଷ୍କାର କରିଦେବି ।

୨

ପୋଖରୀ ତାଳଘେରା ବଙ୍ଗଳାର ଏକ ପଲ୍ଲୀର ଶୀତଳ ଉତ୍ସଙ୍ଗରେ ମୋର ଶୈଶବ କଟିଯାଇଥିଲା ଠିକ୍ ଯେମିତି ଭାରତର ସାତ ଲକ୍ଷ ଗାଁରେ

ଅସଂଖ୍ୟ ଶିଶୁଙ୍କର ଜନ କହିଯାଏ କୌଣସି ବଶିଷ୍ଟତାର ସ୍ୱାକ୍ଷର ବହନ ନକରେ । ତେଣୁ ମୁଁ ମୋର ସେଇ ଶୈଶବ ସମ୍ପର୍କରେ କଛି ଲେଖି ଜୀବନୀର ପୃଷ୍ଠାସଂଖ୍ୟା ଅଯଥା ବଢ଼ାଇଦେବନ ।

ମୁଁ ତ କେଖିକ ସେଇ ସମାଲୋଚକମାନଙ୍କପାଇଁ ଯେଉଁମାନେ ମଣିଷର ଜୀବନକୁ ଏକ ଆରମ୍ଭ ଓ ଶେଷଥିବା ସରଳରେଖରୂପେ ଦେଖିବାକୁ ଚାହାନ୍ତି । ସେମାନେ ନିଏତ ବହୁତକର ମୋତେ ପଚାରାଯାଇନ୍ତି ।

'କୋନେ କାଳେ ଛୁଟନୋଦିକ ମୁକ୍ତକଚା ଜାଳିବା କଥୁପୀ ?'

ସତନସୃରେ ମୁଁ ସେମାନଙ୍କୁ ଉତ୍ତର ଦଉଚି ପୂର୍ଣ୍ଣ ଜୀବନୀ ଲେଖିବାର ମାନସିକ ସ୍ଥିତି ମୋର ସମ୍ଭବତଃ ନାହିଁ । ତେଣୁ ଠିକ୍ ସେଇ ଅଂଶଗୁଡ଼କ ଯେଉଁଗୁଡ଼କ ବାଦ୍ ପଡ଼ିଗଲେ ମୋର କାର୍ଯ୍ୟକଳାପ ଉପରେ ଏକ ସ୍ୟାନ୍ଧବ୍ରତା ଚର୍ଚ୍ଚା ଘୋଟାଇ ହୋଇଯିବ, ମୁଁ ମୋର ଲେଖାରେ ଅନାବୃତ କରିବ ।

ତେଣୁ ମୋର ଜୀବନୀ ଆରମ୍ଭ କରିବ ଠିକ୍ ସେଇ ଜାଗାରୁ ଯାହାକୁ ଲକ୍ଷ୍ୟକରି ସମାଲୋଚକ କହିଥାରନ୍ତି, 'ଯଖନ ଜାଗିଲେ ବଣ୍ଣେ, ଯୌବନେ ଗଠିତା । ପୂର୍ଣ୍ଣ ଭୂତ ହିତା ।' ପ୍ରବେଶିକା ପରୀକ୍ଷାରେ ପ୍ରଦେଶରେ ଦ୍ବିତୀୟ ସ୍ଥାନ ଅଧିକାରକରି ମୁଁ ଯେତେବେଳେ ପ୍ରେସିଡ଼େନ୍‌ସି କଲେଜରେ ଯୋଗଦେଲି, ସେତେବେଳେ ମୋର ଚକ୍ଷୁ, କର୍ଣ୍ଣ, ମନ ପ୍ରଭୃତି ଇନ୍ଦ୍ରିୟମାନେ ଥିଲେ ଅତିମାତ୍ରାରେ ଆହରଣଶୀଳ । ବାଲୁକାରାଶି ଜଳ ଶୋଷି ନେଲାପରି ମୋର ମସ୍ତିଷ୍କ ଅତିମାତ୍ରାରେ ଗ୍ରହଣକରି ଚାଲିଥିଲା ଚତୁର୍ଦ୍ଦିଗର ଭାବଧାରାର ଜଳ ରାଶିଗୁଡ଼କୁ ।

ସମାଜକୁ ଦୂଷିତ କରୁଥିବା କ୍ଷତଗୁଡ଼କ ମୋ ଆଖି ଆଗରେ ସ୍ପଷ୍ଟ ହୋଇଯାଉଥିଲା । ଚଳଅ ଲୋକଙ୍କୁ ସବୁଦିନେ ଉପୁଜାତ ରଖି ଶୋଷଣର ଚକ୍ର ଚାଲୁରଖିଥିବା ଅଭିଜାତ ସମ୍ପ୍ରଦାୟ ପ୍ରତି ମୋ ମନରେ ଘୃଣା ଜମାଟ ବାନ୍ଧିଯାଉଥିଲା ।

ଫୋଏପୋର୍ ବନଙ୍କ ଏବଂ ମାର୍କସଙ୍କ ଲେଖା ପାଠକରିସାରି ମୁଁ ଯେତେବେଳେ କମ୍ୟୁନିଷ୍ଟ ବନ୍ଧୁମାନଙ୍କର ପ୍ରଥମ ଗୁପ୍ତ ବୈଠକରେ

ଯୋଗଦେଲ, ଦଳର ସୂତ୍ରନେତା ସାନ୍ୟାଲ ଭଟ୍ଟାଚାର୍ଯ୍ୟ ମୋତେ ଲକ୍ଷ୍ୟକରି କହିଲେ, 'ଧର୍ମସ୍ୟଧାର ନିଶିତା ଦୁରତ୍ୟୟା । ଦୁର୍ଗଂ ପଥସ୍ତତ୍ କବୟୋ ବଦନ୍ତି ।'

ଧର୍ମର ଧାର ତୀକ୍ଷ୍ଣଧାର ଛୁରି ପରି ସେ ପଥ ଦୁର୍ଗମ

ଆଃ ସାନ୍ୟାଲ । ତମଭଳି ପୁଅ ଯେତେବେଳେ ଭାରତଜନନୀ ଜନ୍ମ କରୁଛି ତେବେ ଭବିଷ୍ୟତ ପାଇଁ ମୋର ଆଶଙ୍କା କରିବାର କ'ଣ ଅଛି ?

ଯତୀନ୍, ଭଗତ ସିଂ, ଆଜାଦ୍ ପର୍ଯ୍ୟାୟର ସାଧକଥିଲେ ସାନ୍ୟାଲ । ଗୋରା ତକ ତକ ଦେହରେ ତାଙ୍କର ଥିଲା ସିଂହର ବଳ । ଅଗ୍ନେୟାସ୍ତ୍ର ବ୍ୟବହାରରେ ତାଙ୍କର ଥିଲା ଅମାନୁଷୀ ଦକ୍ଷତା । ବଙ୍ଗଳାର ଏକ ବିଭବଶାଳୀ ପରିବାରର ସୁଖ ସ୍ୱାଚ୍ଛନ୍ଦ୍ୟକୁ ପଦାଘାତକରି ସେ ବାଛି ନେଇଥିଲେ ରକ୍ତକ୍ଷୟୀ ବିପ୍ଳବର ପଥ ।

ବଙ୍ଗଳାର ଅସଂଖ୍ୟ ଡକାୟତିରେ ସାନ୍ୟାଲ ଥିଲେ ନେତୃଦୂତ ।

ଗୋଟିଏ ଦିନଟି ହଠାତରେ ସାନ୍ୟାଲ ମୋତେ କହିଲେ, 'ମୁଁ ତୁମକୁ ଏକ ଶାଣିତ ଅସ୍ତ୍ରଭାବରୂପେ ଗଢ଼ିବାକୁ ଚାହେଁ ଦେବକାନ୍ତ । ମୋତେ ତମେ ସେ ସୁଯୋଗ ଦେବନି ?'

ମୁଁ ନୀରବରେ ହସିଥିଲି ।

ତେବେ ସାନ୍ୟାଲ କହିଥିଲେ, 'ତମେ ତ ଜାଣ ଦେବକାନ୍ତ । ଏ ଧୂର୍ତ୍ତ ପାଗଳ ସୌଦାଗରୀ ସମାଜରେ ନାରୀର ଦେହ ଏକ ପଣ୍ୟ ସାମଗ୍ରୀ । ତେଣୁ ତମକୁ ସତର୍କ ରହିବାକୁ ପଡ଼ିବ ଏବଂ ନିଜକୁ ପ୍ରସ୍ତୁତ କରିବାକୁ ପଡ଼ିବ ।'

ମୋ ଚକ୍ଷୁରେ କିଛି ବୁଝି ନ ପାରିବାର ବିହାଣି ଫୁଟି ଉଠିଥିଲା । 'ମୁଁ ତମକୁ ଜୁଡ଼ୋ ଆଉ କ୍ୟାରେଟି ଶିଖାଇଦେବି ଦେବକାନ୍ତ । ତାହେଲେ ଆଉ ତମକୁ ବର୍ବର ଶଗୁଣାଠୁ ଅଧମ ପୁରୁଷମାନଙ୍କର ମୁକାବିଲା କରିବାରେ ଅସୁବିଧା ହେବନାହିଁ ।'

ସାନ୍ୟାଲ ଯେ ମୋର କେତେବଡ଼ ହିତାକାଂକ୍ଷୀ ଥିଲେ, ତା ମୁଁ ପରଜୀବନରେ ବୁଝି ପାରିଛି ।

ତୁମର ଦେବତା ମୋତେ କରୁଣା କରିବାରେ କାର୍ପଣ୍ୟ କରି ନଥିଲେ । ତେଣୁ ଜୀବନରେ ପଦେ ପଦେ ମୋତେ ଅଗଣିତ ଲୋଭ୍ୟ ବସ୍ତୁର ସାମ୍ନା କରିବାକୁ ପଡ଼ିଥିଲା ।

ପ୍ରେସିଡେନ୍‌ସି କଲେଜର ଦାଦାମାନେ ମୋତେ ବସ୍ତୁର ପଦ୍ମ ବୋଲି ଭାବୁଥିଲେ, କାରଣ ଯେଉଁ ମୁଷ୍ଟିମେୟ ଯୁବକ ସାଧାରଣଙ୍କ ଦୃଷ୍ଟିରେ ସର୍ବନାଶର ପଥରେ ଓହ୍ଲାଇ ଯାଉଥିଲେ ମୁଁ ସେମାନଙ୍କର ଗହଣରେ ବହୁ ସମୟ ଅତିବାହିତ କରୁଥିଲି ।

ପିଲାଦିନରୁ ମୁଁ ମାତୃହରା ଥିଲି । ବାପା ନିଜର ପଞ୍ଚବର୍ଷାଧିକ ଅତି ଯତ୍ନ ଓ ଆଗ୍ରହରେ ମୋର ଲାଳନ ପାଳନ ଦାୟିତ୍ୱ ନେଇଥିଲେ । ମୁଁ ଯେତେବେଳେ ପ୍ରେସିଡେନ୍‌ସି କଲେଜରେ ପଢ଼ିବାକୁ ଆସିଲି, ବାପା ବି. ଡି. ଓ ଚାକିରି ପାଇ ଓଡ଼ିଶା ବୁଲୁଥିଲେ । ବାପାଙ୍କର ବୟସ ବେଶୀ ହୋଇଥିଲେ ମଧ୍ୟ ଯୁଦ୍ଧ ଫେରନ୍ତା ଲୋକ ହିସାବରେ ତାଙ୍କୁ ଚାକିରି ମିଳିବାରେ ଅସୁବିଧା ହେଲନି ।

ମା'ର ଅଭାବ, ବାପାଙ୍କର ଅତ୍ୟଧିକ ସ୍ନେହ, କେତେକମାତ୍ରାରେ ମୋତେ ନିରଙ୍କୁଶ ଓ ଉଚ୍ଛୃଙ୍ଖଳ କରିଥିଲା । ମୁଁ ଅସଂଯତ ଜୀବନର ଜିଦ୍‌ଖୋର ଥିଲି ।

ଜୀବନର ସେଇ ନରମା ବୟସ, ଯେତେବେଳେ ନିଜଉପରେ ବିଶ୍ୱାସ ଥାଏ ଅପରିମିତ, ମୋର ସାର୍ଥକ ହୋଇଥିଲା ସଲିଳ ଭଟ୍ଟାଚାର୍ଯ୍ୟଙ୍କ ପୃଷ୍ଠପୋଷକତା ପାଇ । ଜ୍ଞାନ ଗରିମାରେ ସମୃଦ୍ଧ ଏଇ ତରୁଣ ଶିକ୍ଷକ ମୋର ଥିଲେ ଏକାଧାରରେ Friend, Philosopher and Guide. ବନ୍ଧୁ, ସଖା ଓ ଦାର୍ଶନିକ । ପ୍ରେସିଡେନ୍‌ସି କଲେଜର ବାର୍ଷିକ ତର୍କସଭାରେ ଯେତେବେଳେ ମୁଁ ପ୍ରଥମ ପୁରସ୍କାର ନେଇଗଲି ବିଶ୍ୱବିଦ୍ୟାଳୟର ପ୍ରସିଦ୍ଧ ତାର୍କିକମାନଙ୍କୁ ପରାସ୍ତ କରି; ବୃଦ୍ଧ ଅଧ୍ୟାପକମାନେ ଆନନ୍ଦରେ କରମର୍ଦ୍ଦନ କରି ମୋତେ ଆଶୀର୍ବାଦ ଜ୍ଞାପନ କରିଥିଲେ । ସଲିଳଦାଙ୍କ ମନସ୍ତାତ୍ତ୍ୱିକ ଉପଦେଶ ମୋର ଅସମାପ୍ତ ମନକୁ ଧୀରେ ଧୀରେ ଏକ ନିର୍ଦ୍ଦିଷ୍ଟ ସରଣୀଭୁକ୍ତ କରାଇପାରିଥିଲା ।

ଅଧ୍ୟୟନରେ ତ୍ରୁଟି ନଥିଲା । ତେଣୁ ଏକମାତ୍ର ସନ୍ତାନର ମଙ୍ଗଳକାମନା ଦୃଷ୍ଟିରୁ ହେଲେ ବି ବାପା ମୋର ଜିଦ୍‌ଖୋର ସ୍ୱଭାବକୁ ବରଦାସ୍ତ କରୁଥିଲେ ।

ଜୁଡୋ ଏବଂ କ୍ୟାରାଟିରେ ପାରଦର୍ଶିତା ମୋତେ ବେପରୁଆ କରିଦେଇଥିଲା । ସହରତଳି ବସ୍ତି ଅଞ୍ଚଳରେ ଅପରାଧୀଙ୍କ ରାଜ୍ୟରେ ମଧ୍ୟ ମୁଁ ଅନାଦ୍ୱିଧାରେ ପ୍ରବେଶ କରିପାରୁଥିଲି ।

ଗରିଲା କୌଶଳ ଏବଂ ଆଗ୍ନେୟାସ୍ତ୍ର ଚାଳନା ଆମକୁ ବର୍ଷବର୍ଷ ଧରି ଶିକ୍ଷା ଦିଆଯାଇଥିଲା । ସଶସ୍ତ୍ର ବିପ୍ଳବ ଦ୍ୱାରା ଦେଶରେ ସାମ୍ୟବାଦ ଆନୟନ ଆମର ଚରମ ଧ୍ୟେୟ ଥିଲା ।

ଅସମୟରେ ହଠାତ୍ ବାପାଙ୍କ ଆଗମନ ବାର୍ତ୍ତାପାଇ ମୁଁ ଚମକି ପଡ଼ିଲି । ମେସ୍‌ର ବନ୍ଧୁମାନଙ୍କୁ ସେଦିନ ରାତିରେ ନଫେରିପାରିବାର ସମ୍ଭାବନା ସମ୍ପର୍କରେ ଅବଗତ କରାଇ ମୁଁ ବାପାଙ୍କ ନିର୍ଦ୍ଦେଶିତ ଠିକଣାରେ ଅପରାହ୍ନେ ପହଞ୍ଚିଲି ।

ସମରଦା'ଙ୍କ ଘରେ ହିଁ ବାପାଙ୍କ ସହ ମୁଁ ସାକ୍ଷାତ୍ କରିଥିଲି । ବାପା ସମରଦା'ଙ୍କ ପରିଚୟ ଦେଇ କହିଥିଲେ ସେ ଆମର ଦୂର ସମ୍ପର୍କୀୟ ଜଣେ ବଂଧୁ ଏବଂ ପରିବାରର ଜଣେ ଅକୃତ୍ରିମ ଶୁଭାକାଙ୍କ୍ଷୀ । ବାପା ପୁଣି କହିଥିଲେ ଯେ ତାଙ୍କର ଡି.ଡି.ଓ ଚାକିରି ଓ ମୋର ପାଠପଢ଼ା ମୂଳରେ ବେଶୀ ଅବଦାନ ରହିଛି ସମରଦା'ଙ୍କର ।

ସମରଦା'ଙ୍କର ସ୍ତ୍ରୀଙ୍କର ବ୍ୟବହାର ମୋତେ ବହୁତ ଭଲ ଲାଗିଥିଲା । ବାପା ପ୍ରାୟ ଏକ ସପ୍ତାହ ସମରଦା'ଙ୍କ ଘରେ ରହିଥିଲେ ଓ ମୋର ମଧ୍ୟ ସେ ସପ୍ତାହର ଅଧିକାଂଶ ସମୟ ବାପାଙ୍କ ସାଙ୍ଗରେ କଟିଥିଲା ।

ଦିନେ ଏକ ସୁରକ୍ଷିତ ସନ୍ଧ୍ୟାରେ କେବଳ ବାପା ଓ ମୁଁ ବସିଥିବାବେଳେ ବାପା କହିଲେ, 'ବାବା, ତତେ ମୁଁ ଛାଡ଼ି ଦୂରକୁ ଯାଉଛି ସିନା, ମୋର ମନ ସବୁବେଳେ ତୋପାଖରେ ହିଁ ପଡ଼ିରହୁଛି ।'

'ତମେ କାହିଁକି ଚିନ୍ତା କରୁଛ ବାପା ? ତମର ଚିନ୍ତା କରିବାର ଆବଶ୍ୟକତା ତ ଏବେ ବେଶୀ ନାହିଁ ।

'ସେ କଥା ତୁ ଏବେ ବୁଝିପାରିବୁନି ବାବା । ତୋର ନିଜ ପରିବାରର ବୋଝ ଯେତେବେଳେ ତୋ ଉପରେ ପଡ଼ିବ, ସେତେବେଳେ ଯାଇ ବୁଝିବୁ ।'

'ପରିବାର କହିଲେ ତ ମୁଁ ଜଣେ । ମୋର ବୋଝ କ'ଣ ଏତେ ବେଶୀ ହୋଇଯାଇଛି ଯେ ଏତେ ଦୂରରେ ରହିମ ବୁଝିଲ ନ କହିଲ ତଲୁନ ?'

ବାପାଙ୍କ ଆଖିରେ ଉଦାସ ବ୍ୟଥା ଫୁଟି ଉଠିଲା । ଦୀର୍ଘନିଃଶ୍ୱାସ ତ୍ୟାଗ କରି ସେ କହିଲେ, 'ଏତେ କେତେ କଥା କହିବି କହିବି ବୋଲି ବହୁ ଦିନରୁ ଭାବୁଛି ହେଲେ...'

'କହନ୍ତୁ ବାପା', ମୋ ସ୍ୱରରେ ଅଭିମାନମିଶା ଥରର ମାତ୍ରାଟି ଅସ୍ପଷ୍ଟ ନଥିଲା ।

'ମୋର ଏକମାତ୍ର ଭରସା ହେଉଛୁ ତୁ । ସମ୍ଭବତଃ ତୁ ଜାଣିନୁ କିନ୍ତୁ ମୁଁ ସଚେତନ ଯେ ଏ ମାଟିର ଏକ ଖ୍ୟାତନାମା ବଂଶର ଦାୟାଦ ହେଉଛୁ ଆମେମାନେ ।'

'ମୋର କାର୍ଯ୍ୟକଳାପର କେଉଁଠି ତ୍ରୁଟି ଦେଖିଲେ ବାପା ?'

'ମୁଁ ଶୁଣିବାକୁ ପାଇଲି ତୁ ଶସ୍ତ୍ର ବିପ୍ଳବୀ ଦଳର ସଭ୍ୟପଦ ଗ୍ରହଣ କରି ନେଇଛୁ ।'

'ଆମର ସ୍ୱାଧୀନ ଦେଶରେ ଯେଉଁମାନେ ଶୋଷଣର ବନ୍ୟା ବୁହାଇଦେଇଛନ୍ତି, ସେମାନଙ୍କର ଅପରାଧ ମାର୍ଜନୀୟ ନୁହେଁ ବାପା ।'

'ମୁଁ ତୋ ସହିତ ଯୁକ୍ତି କରିବାକୁ ଆସିନି ବାବା । ତୁ କେବଳ ମୋତେ କଥାଦେ ଯେ ଯେକୌଣସି ପରିସ୍ଥିତିରେ ମଧ୍ୟ ତୁ କୌଣସି ହିଂସାକାଣ୍ଡ ସହିତ ସଂଲଗ୍ନ ହୋଇଯିବୁନି ।'

ମୁଁ ନୀରବ ଥିଲି । ମୋର କାର୍ଯ୍ୟକଳାପର ସୂଚନା ଯେ ସୁଦୂର ଓଡ଼ିଶାରେ ପହଞ୍ଚିବ ଏ ଆଶଙ୍କା ମୋର ନଥିଲା ।

'ଆଉ ଗୋଟିଏ କଥା । ତୁ ଯେତେବେଳେ କୌଣସି ଅସୁବିଧାର ସମ୍ମୁଖୀନ ହେଉଥିବୁ ସମରଦା'ର ପରାମର୍ଶ ନେଉଥିବୁ ।'

ବାପାଙ୍କର କଥା ମୋର ଅବୋଧ ରହିଗଲା । ସମରଦା' ଉପରେ ତାଙ୍କର ଏତେ ଅଖଣ୍ଡ ବିଶ୍ୱାସ କାହିଁକି, ଏ କଥାର ଭିତ୍ତିଭୂମି ମୁଁ ଖୋଜିପାଇ ନଥିଲି ।

ବାପାଙ୍କ ସହିତ ସେହି କଥାବାର୍ତ୍ତା ଯେ ଶେଷ କଥାବାର୍ତ୍ତା ହେବ ଏହା ମୁଁ ସ୍ୱପ୍ନରେ ମଧ୍ୟ ଭାବିନଥିଲି । ପାଖ ଦୁଇ ମାସପରେ ହଠାତ୍ ସମରଦା'ଙ୍କ ପାଖରୁ ଡାକରାପାଇ ଯେତେବେଳେ ଯାଇ ପହଞ୍ଚିଲି, ଦେଖିଲି ବାପାଙ୍କର ନିସ୍ପନ୍ଦ ଶରୀର ଘେରିକରି ଡାକ୍ତରମାନେ ବସିଚନ୍ତି ଏବଂ ବାତାବରଣରେ ଘୃଣିତପ୍ରଦ ନୀରବତା ଛାଇଯାଇଛି ।

ସମର ଦା'ଙ୍କଠାରୁ ଜାଣିବାକୁ ପାଇ ଅଶ୍ରୁବେଗକୁ ବାଧାଦେଇ ସ୍ଥିରିଆସିଲି । ସମର ଦା' କହିଲେ, 'ଏ ହେଉଛି ଏକ ମାରାତ୍ମକ ଧରଣର ହାର୍ଟଷ୍ଟ୍ରୋକ୍ । ଏଥିରୁ ରକ୍ଷା ପାଇବାର ଆଶା ଅତ୍ୟନ୍ତ କ୍ଷୀଣ ।'

ମନକୁ ଉତ୍ପୀଡ଼ନକାରୀ ମର୍ମନ୍ତୁଦ ଦୁଃଖକୁ ସହି ନେଇଗଲି । ସମର ଦା' ସେ ସମୟରେ ଯେଉଁଭଳି ସାହାଯ୍ୟ କରିଥିଲେ, ସେଥିରେ ସ୍ୱତଃ ମୋ ମନ ତାଙ୍କ ପ୍ରତି ଭକ୍ତିଯୁକ୍ତ ହୋଇପଡ଼ିଥିଲା ।

ସମର ଦା'ଙ୍କର ଚେଷ୍ଟା ଫଳରେ ବାପାଙ୍କର ପ୍ରଭିଡେଣ୍ଟ ଫଣ୍ଡ, ଗ୍ରେଚୁଇଟି ଏବଂ ଅନ୍ୟାନ୍ୟ ଦେୟ ମିଳିବାରେ ଅସୁବିଧା ଦେଖାଦେଲାନି । ଗାଁ ସମ୍ପତ୍ତିର ରକ୍ଷଣାବେକ୍ଷଣ ଦାୟିତ୍ୱ ମଧ୍ୟ ସମର ଦା' ଖୁସିରେ ଗ୍ରହଣ କରିନେଲେ ।

ପାଠ ପଢ଼ାରେ ଶୈଥିଲ୍ୟ ଦେଖାଦେଲାନି କାରଣ ଅର୍ଥାଭାବ ନଥିଲା କିନ୍ତୁ ମୋ ମନକୁ ସବୁ ସମୟରେ ଏକରକମ ଔଦାସୀନ୍ୟ ଆଚ୍ଛନ୍ନକରି ରଖିଥିଲା ।

ବାପାଙ୍କର ମୃତ୍ୟୁ ଧକ୍କାର ଘା' ନଶୁଖୁଣୁ ଆଉ ଏକ ଆଘାତ ମୋତେ ମ୍ରିୟମାଣ କରିଦେଲା । ବିପ୍ଳବୀ ସଜ୍ଜନ ଭଟ୍ଟାଚାର୍ଯ୍ୟ ବର୍ଦ୍ଧମାନରେ ପୋଲିସ୍ ଗୁଳିରେ ମୃତ୍ୟୁ ବରଣ କରିଥିଲେ ।

ମୋ ଆକାଶରେ ଚନ୍ଦ୍ର ସୂର୍ଯ୍ୟ ଅସ୍ତମିତ ହୋଇସାରିଥିଲେ । କିନ୍ତୁ ସଲ୍ଲୀଳ ଦା'ଙ୍କର ଆଲୋକ ମୋ ପକ୍ଷରେ ବ୍ୟର୍ଥ ସାବ୍ୟସ୍ତ ହୋଇନଥିଲା । ମୁଁ ମୋର ଜୀବନକୁ ସୁଖ ମାଧ୍ୟରେ ଅନାସ୍ଥାକେନ୍ଦ୍ରିକ କରିଦେଇଥିଲି ।

ସଲ୍ଲୀଳ ଦା'ଙ୍କ ହସ ହସ ମୁଖ କେବେ ପାଶୋରି ପାରୁନଥିଲି । ଶୋଷଣ ଚକ୍ରାନ୍ତରେ ଜୀବନକୁ ଶାଣିତ ଓ ଦୃଢ଼ କରିବାର ଶିକ୍ଷା ମୁଁ ତାଙ୍କଠାରୁ ହିଁ ପାଇଥିଲି ।

ସଲ୍ଲୀଳ ଦା' ହିଁ ମୋତେ ଶିଖାଇଥିଲେ ଯେ ଆଇନ, ପୋଲିସ, ଅଦାଲତ, ଏ ସବୁ କେବଳ ସୁବିଧାଭୋଗୀ ଗୋଷ୍ଠୀର ପ୍ରାଧାନ୍ୟ ଅକ୍ଷୁର୍ଣ୍ଣ ରଖିବାପାଇଁ ରହିଆଛି ।

ଏଠି ପରଗଣ୍ଡପୁଷ୍ଟ ବ୍ୟକ୍ତି ସମାଜର ସବୁ କିଛି ଆନନ୍ଦର ସାମଗ୍ରୀକୁ ନିଜ ସେବାରେ ଲଗାଇ ରଖିଥିଲେ ଓ ଦିନପରେ ଦିନ ଉତ୍ପାଦକ ଲୁଣ୍ଠନର ଶୀକାର ହୋଇ ଅଗଣିତ ନରନାରୀ କ୍ରୀତଦାସ ଜୀବନ କଟାଇବାକୁ ବାଧ୍ୟ ହେଉଥିଲେ ।

ସ୍ୱାମୀଜୀଙ୍କ ସଂସ୍ପର୍ଶରେ ଆସିବା ପୂର୍ବରୁ ମୋର ହୃଦୟରେ ଅଖଣ୍ଡ ବିଶ୍ୱାସ ଥିଲା । ଆମେ କେତେ ଜଣ ଯୁବକର ଉଜ୍ଜଳ ଭବିଷ୍ୟତର ସ୍ୱପ୍ନ ଦେଖିଥିଲୁ । ଏ ଉଜ୍ଜ୍ୱଳ ଭବିଷ୍ୟତର କୁଆଁ କୁଆଁ ଶୁଣାଇବାପାଇଁ ଆମେ ବ୍ୟକ୍ତିଗତ ସ୍ତରରେ ଯେ କୌଣସି ତ୍ୟାଗ କରିବାକୁ ପ୍ରସ୍ତୁତ ଥିଲୁ ।

ଏ ପୃଥିବୀରେ କ'ଣ ଶୋଷଣର ଅନ୍ତ ନାହିଁ ? ଜଳନ୍ତ ଆଖି ଖୋଲିସା ବଜାଇ ଚାଲେ ଅମାପ ଦାରିଦ୍ର୍ୟର ବିଭତ୍ସରୂପ କ'ଣ ସବୁଦିନେ ଦୃଷ୍ଟିଗୋଚର ହେଉଥିବ ?

କ୍ଷୁଧା ହିଁ ପୃଥିବୀର ସବୁଠାରୁ ବଡ଼ ସତ୍ୟ ।

ତେଣୁ ଏ କ୍ଷୁଧାର ଧ୍ୱଂସସ୍ତୂପରୁ କମଳ-ଶ୍ରେଣୀଙ୍କୁ ରକ୍ଷା କରିବାପାଇଁ ପୋଲିସ୍ ଓ ସୈନ୍ୟ ବାହିନୀର ଆବଶ୍ୟକତା ରହିଛି ।

ସଲ୍ଲୀଳ ଦା' ଠିକ୍ କି ଭୁଲ ଏକଥା ବିଚାର କରିବାର ଅଧିକାର ଏ ନୀତିଭ୍ରଷ୍ଟ ସମାଜର ନାହିଁ ।

ସମର ଦା' ଦିନେ ମୋତେ କହିଲେ, 'ବାଳା, ଉଗ୍ରାନ୍ତବାଦ ବୁଦ୍ଧିମତାର ସଂଯୋଗ ନହେଲେ ତରୁଣ ଜୀବନ ବିପଦ୍ ସଙ୍କୁଳ ହୋଇପଡ଼େ ।'

ଅସହିଷ୍ଣୁ କଣ୍ଠରେ ଉତ୍ତର ଦେଇଥିଲି, 'ତମେ ବିଷ୍ଣୁ ଶର୍ମାଙ୍କ ସେଇ ପୁରୁଣା ଶ୍ଳୋକ, ଯୌବନଂଧନସମ୍ପତ୍ତି, ପ୍ରଭୁତ୍ୱମ ଅବିବେକତା ଏକୈକ ମପ୍ୟନର୍ଥାୟ' ···ଆବୃତ୍ତି କରନା ସମୀର ଦା' । ଗତାନୁଗତିକତାକୁ ଚ୍ୟାଲେଞ୍ଜ ଦେବା ହିଁ ତାରୁଣ୍ୟର ଧର୍ମ ।'

ସମ୍ଭବତଃ ଆଘାତ ପାଇଥିଲେ ସମରଦା' ମୋର ଏ ଉତ୍ତର ଶୁଣି । କିଛିକ୍ଷଣ ଚୁପ୍ ରହି ସେ କହିଥିଲେ, 'ତୁ ବର୍ତ୍ତମାନ ଏଭଳି ଏକ ବୟସରେ ପହଞ୍ଚିଛୁ, ଯେତେବେଳେ ମୋର ତୋ ସହିତ ମିତ୍ରଭଳି ବ୍ୟବହାର କରିବା ଦରକାର । କିନ୍ତୁ ମୁଁ ଭୁଲିପାରୁନି ଏଇ କଥାକୁ ଯେ ତୋର ବାପା ତୋର ଭାର ମୋର ଦୁର୍ବଳ ସ୍କନ୍ଧ ଉପରେ ନ୍ୟସ୍ତ କରିଯାଇଛନ୍ତି ।'

'ତୁମଣର ଉପଦେଶ ଦେବାର ଅଧିକାରକୁ ମୁଁ ଅସ୍ୱୀକାର କରୁନି ସମରଦା' । କିନ୍ତୁ ମୁଁ ଯଦି ମୁଁ ନହୋଇ ସମରଦା'ଙ୍କର ଏକନିଷ୍ଠ ଅନୁକରଣ ହୁଏ ତେବେ ପ୍ରଗତିର ରଥଚକ କ'ଣ ଠିକ୍ ରାସ୍ତାରେ ଚାଲିପାରିବ ?'

'ମୁଁ ବୁଝୁଚି ବାଳା, ଏ ସମାଜରେ ଏଭଳି ଯଥେଷ୍ଟ ଆବିଳତା ରହିଛି ଯାହା ତୋ ଭଳି ତରୁଣୀକୁ ଉତ୍କ୍ଷିପ୍ତ କରୁଚି । କିନ୍ତୁ ଇଟାଳିକୁ ଆଗ୍ନେୟଗିରିର କବଳରୁ ରକ୍ଷା କରିବାକୁ କେହି ଯଦି ଏଟ୍ନାର ଦେହରେ ଲମ୍ଫ ଦିଏ, ତେବେ ଆମେ ସେହି କାର୍ଯ୍ୟକୁ କ'ଣ ଉଚିତ କାମ କହିବା ।'

ଏଟ୍ନାର ଗହ୍ୱରରେ ଲମ୍ଫଦେଇଥିଲେ ସିସିଲିର ଯେଉଁ ଦାର୍ଶନିକ ଜଣକ, ତାଙ୍କୁ ନେଇ ତ ପେର୍ କାବ୍ୟରଚନା କଲେ ଇଂଲଣ୍ଡର ତିନିଜଣ ପ୍ରସିଦ୍ଧ କବି, ମିଲ୍ଟନ୍, ମାଥ୍ୟୁ, ଆର୍ଣ୍ଣଲ୍ଡ ଏବଂ ମେରେଡ଼ିଥ୍ । ଗତାନୁଗତିକତାର ଶିକୁଳି ଜମାଉଥିବା କୋଟି କୋଟି ଲୋକଙ୍କ ମଧ୍ୟରେ ଏମ୍ପେଡ଼ୋକ୍ଲିସ୍ମାନେ ହିଁ କାବ୍ୟ ପୁରୁଷ ।'

'ସଶସ୍ତ୍ର ବିପ୍ଳବ ଓ ବ୍ୟକ୍ତିଗତ ଆତଙ୍କବାଦରେ ବିଶ୍ୱାସ କରୁଥିବା ନକ୍ସଲାଇଟ୍ ଗୋଷ୍ଠିରେ ତୁ ଯୋଗ ଦେଇଛୁ । ବ୍ୟକ୍ତିଗତ ଆତଙ୍କବାଦ ଏକ

ଖ୍ୟାଲ ଷ୍ଟ୍ରେଟେଜି ଏବଂ ଏକ ଶକ୍ତିଶାଳୀ ସରକାର ବିରୁଦ୍ଧରେ ସଶସ୍ତ୍ର ବିପ୍ଳବର ସ୍ୱପ୍ନ ଦେଖିବା ଏକ ପାଗଳାମି ।'

କୁମିଙ୍ଗ୍ ଟାଙ୍ଗ୍ ର ସରକାର ମଧ୍ୟ ବହୁତ ଶକ୍ତିଶାଳୀ ଥିଲା । କିନ୍ତୁ ମାଓ ଜେଦୁଂଙ୍କର ସଶସ୍ତ୍ର ବାହିନୀ ଆଗରେ ତାକୁ ପରାଜୟ ସ୍ୱୀକାର କରିବାକୁ ପଡ଼ିଥିଲା ।'

'ଭାରତ ଚୀନ୍ ନୁହେଁ କିମ୍ବା ମାଓ ଜେଦୁଂଙ୍କ ଦଳ ଭଳି ଏକ ସୁସଙ୍ଗଠିତ ଦଳ ଏ ଦେଶରେ ନାହିଁ । ଦୁଇଦେଶ ମଧ୍ୟରେ କେତେକ ସାଦୃଶ୍ୟ ତମଭଳି କେତେ ଜଣ ସବୁଜ ପ୍ରାଣକୁ ପ୍ରତାରିତ କରିଛି । ତମେମାନେ ପୋଲିସ୍ ଅତ୍ୟାଚାରର ଶିକାର ହେବା ଛଡ଼ା ଏ ଦେଶରେ ଆଉ କିଛି ହୋଇ ପାରିବ ନାହିଁ ।'

ଆପଣଙ୍କ ପ୍ରତି ସମସ୍ତ ସମ୍ମାନ ସତ୍ତ୍ୱେ ମୁଁ କହିବି ଯେ ଆପଣ ଜଣେ ଅତିରିକ୍ତମାତ୍ରାରେ ନୈରାଶ୍ୟବାଦୀ । ପରିଣାମ ଯାହା ହେଉନା କାହିଁକି, ମୁଁ ମୋର ରାସ୍ତା ତ୍ୟାଗ କରିପାରିବି ନାହିଁ ।'

ସମରଦା'ଙ୍କ ସହିତ ବାର୍ତ୍ତାଳାପର ଦୃଷ୍ଟିଚକ୍ର ସେଇଠିକିରେ ଶେଷ ହୋଇଯାଇଥିଲା । ମନରେ ଗଭୀର ବିରକ୍ତି ନେଇ ମୁଁ ଫେରି ଆସିଲି ସମରଦା'ଙ୍କ ଘରୁ ।

ବି. ଏ. ପରୀକ୍ଷାରେ ବିଶ୍ୱବିଦ୍ୟାଳୟରେ ଚତୁର୍ଥ ସ୍ଥାନ ଦଖଲ ଏବଂ କଲେଜର ଶ୍ରେଷ୍ଠ ତାର୍କିକ ରୂପରେ ସ୍ୱୀକୃତି ମୋର ମନକୁ ଆକାଶରେ ଉଡ଼ାଇବା ପାଇଁ ଯଥେଷ୍ଟ ଥିଲା । ତରୁଣ ମହଲରେ ଏକ ଅଗ୍ନିକଣା ରୂପରେ ପରିଚିତ ହେବା ମୋ ପକ୍ଷରେ ଗର୍ବ ଓ ଆନନ୍ଦର ବିଷୟ ଥିଲା ।

କିଛିଦିନ ପରେ ସମରଦା'ଙ୍କ ଠାରୁ ଜରୁରୀ ନିମନ୍ତ୍ରଣ ପାଇ ମୁଁ ତାଙ୍କ ଘରକୁ ଯାଇଥିଲି । ସମରଦା'ଙ୍କ ମୁହଁରେ ଅସାଧାରଣ ଗାମ୍ଭୀର୍ଯ୍ୟ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି, କିନ୍ତୁ ବିଚଳିତ ହୋଇ ନ ଥିଲି ।

'ମୋର ଆଶଙ୍କା ସତ୍ୟ ପ୍ରମାଣିତ ହେଲା ବାଳା । 'ବନଗାଁ'ର ହତ୍ୟା ଓ ଡକାୟତିରେ ତୁ ସମ୍ପୃକ୍ତ ବୋଲି ପୋଲିସ୍ ସନ୍ଦେହ କରୁଛି । ଆସନ୍ତା ଚବିଶ ଘଣ୍ଟା ଭିତରେ, ତତେ ସେମାନେ ଗିରଫ କରିବେ ।'

'କିନ୍ତୁ ମୁଁ ତ ସେ ଡକାୟତି କିମ୍ବା ତାଙ୍କ ସହ ସମ୍ପୃକ୍ତ ନୁହେଁ ।'

'ତୁ ନ ଥାଇପାରୁ, କିନ୍ତୁ ତମ ଦଳର କେତେ ଜଣ ଯୁବକ ସେଥିସହ ନିଶ୍ଚିତ ଭାବରେ ସମ୍ପୃକ୍ତ ଅଛନ୍ତି । ତେଣୁ ସନ୍ଦେହରେ ତୁ ଗିରଫ ହେବା ନିଶ୍ଚିତ ।'

ମୁଁ ନୀରବ ଥିଲି ।

'ମୋଲସ୍, ବିଶେଷତଃ ଅମର ଗାଙ୍ଗୁଲି ଭଳି ଇନସ୍ପେକ୍ଟର, ଯେ ବିପ୍ଳବୀମାନଙ୍କ ପକ୍ଷରେ କେତେ ଭୟାନକ ତା ତୁ ନିଶ୍ଚୟ ଜାଣୁ ।'

ଅମର ଗାଙ୍ଗୁଲି । ମସ୍ତିଷ୍କରେ ସ୍ତରେ ସ୍ତରେ ଆଲୋଡ଼ନ ଆରମ୍ଭ ହୋଇଗଲା । ଅମର ଗାଙ୍ଗୁଲି ଜଣେ ସାଡ଼ିଷ୍ଟ । ଦୋଷୀ ନିର୍ଦ୍ଦୋଷୀ ସମସ୍ତଙ୍କୁ ଅମାନୁଷିକ ଭାବରେ ଯନ୍ତ୍ରଣା ଦେଇ ସେ ଆନନ୍ଦ ପାଇଥାନ୍ତି ।

'ତୋ ପାଟିରୁ କଥା ଆଦାୟ କରିବା ପାଇଁ ତୋତେ ନିଶ୍ଚୟ ଯନ୍ତ୍ରଣା ଦିଆଯିବ । ତୋର ନିର୍ଦ୍ଦୋଷୀତ୍ୱ ବା Innocence ମଧ୍ୟ ତତେ ରକ୍ଷା କରିପାରିବନି ।'

କୌଣସି ଉତ୍ତର ଦେଇପାରି ନଥିଲି ।

'ତୁ ଆଜ ରାତି ଗାଡ଼ିରେ କଲିକତା ଛାଡ଼ି ଚାଲିଯା । ଯଦୁନାଥ ତୋ ସାଥିରେ ଯିବ । ଓଡ଼ିଶାର କୋରାପୁଟ ଜିଲ୍ଲାରେ ଉମରକୋଟ୍‌ରେ ମୋର କେତେଜଣ ବନ୍ଧୁ ଅଛନ୍ତି । ମୋଠାରୁ ସବୁଜ ସଙ୍କେତ ପାଇବା ପର୍ଯ୍ୟନ୍ତ ତତେ ସେ ଅଞ୍ଚଳରେ ଅଜ୍ଞାତବାସ କରିବାକୁ ପଡ଼ିବ ।'

କୋଳାହଳମୟ ମହାନଗରୀରୁ ଚାଲିଆସିଲି ଡେଙ୍ଗା ଡେଙ୍ଗା ଗଛ ଓ ଖପିରେ ହଁଆ ହେଇଁ କରୁଥିବା ଝରଣାର ରାଜ୍ୟକୁ ।

ଐଶ୍ୱର୍ଯ୍ୟମୟୀ କୋରାପୁଟ ମୋତେ ଆକର୍ଷିତ କଲା । ମୋର ମନେହେଲା ଯେପରି ବହୁଦିନ ପରେ ମୁଁ ମାଆ କୋଳକୁ ଫେରି ଆସିଛି ।

ପାହାଡ଼ିଆ ଲୋକଙ୍କ ସହ ମୁଁ ମିଶିଲି ଓ ନିଜକୁ ନିଃଶେଷ କରି ଆପଣାକୁ କିପରି ଅଜାଡ଼ି ଦେବାକୁ ହୁଏ, ତା ମୁଁ ସେମାନଙ୍କଠାରୁ ଶିଖିଲି ।

ମୁଁ ଭୁଲିଗଲି ମୋ ମୁଣ୍ଡ ଉପରେ ଏକ ଶାଣିତ ଖଡ୍ଗ ଅନବରତ ଝୁଲୁଛି । ମୁଁ ଭୁଲିଗଲି ମୁଁ ପୋଲିସ୍‌ର ଅତ୍ୟାଚାରକୁ ଭୟ କରି ଅଜ୍ଞାତବାସ କରିବାକୁ ଆସିଛି ବନବାସୀଙ୍କ ଗ୍ରାମକୁ ।

କୋରାପୁଟର ଶୋଷଣ ମତେ ଉତ୍କ୍ଷିପ୍ତ କଲା । ମୋର ରକ୍ତ ଟଗ୍‌ମଗ୍ ଫୁଟିବାକୁ ଲାଗିଲା କୋରାପୁଟରେ ସାହୁକାର ଓ ଧୋବଧାଉଳଗୋଷ୍ଠୀର କାରବାର ଦେଖି ।

ଧୀରେ ଧୀରେ ମୁଁ ସେହି ମାଟିର ପୁଅ ଝିଅମାନଙ୍କର ନିକଟବର୍ତ୍ତୀ ହୋଇଗଲି । ସେମାନେ ମୋତେ ଗ୍ରହଣ କରିନେଲେ ଓ ମୁଁ ତାଙ୍କର ନିଜର ଜଣେ ହୋଇଗଲି । ତାପରେ ମୁଁ ସନ୍ଧାନ ପାଇଲି ସେହି ଅତଳସ୍ପର୍ଶୀ ବ୍ୟକ୍ତିତ୍ୱର ଯାର ପ୍ରତ୍ୟକ୍ଷ କାର୍ଯ୍ୟକଳାପ ମୋତେ ଉଦ୍ବେଳ କଲା ।

ମୁଁ ନିଃସ୍ୱ ହୋଇଗଲି, ଶୂନ୍ୟ ହୋଇଚଲି । ଏକ ଅବର୍ଣ୍ଣନୀୟ ମାଧୁରୀମାଭରା ବ୍ୟଥା ମୋର ହୃଦୟ ମଧ୍ୟରେ ପ୍ରବେଶ କରିଗଲା । ମୋର ମନେହେଲା ହୁଏତ ଭଲି ମୋର ଶେଷ ଗୀତ ମୁଁ ଗାଇସାରିବ ଓ ନିଶ୍ଚିହ୍ନ ହୋଇସାରିବ ।

ଶିକ୍ଷା ଓ ପୂଜାର ଧ୍ରୁଷ୍ଣକସହ ପ୍ରଥମ ସାକ୍ଷାତ ଅତି ମାମୁଲି ଢଙ୍ଗରେ ହୋଇଥିଲା । ଉମରକୋଟ୍‌ର ଏକ ସାଧାରଣ ସଭା ଉପଲକ୍ଷେ ସେ ଉମରକୋଟ୍‌କୁ ଆସିଥିଲେ । ଶ୍ରୋତାମାନଙ୍କ ମଧ୍ୟରୁ ଅନେକେ ଉପାସରେ ବହୁତ ବାଟ ଚାଲି ଆସିଥିଲେ କିନ୍ତୁ ସମସ୍ତଙ୍କ ଆଖିରେ ଏକ ନୂତନ ଚମକ ଥିଲା ।

ମୁଁ ସ୍ୱାମୀଜୀଙ୍କୁ ଦେଖିଲି ଓ ଆତ୍ମବିସ୍ମୃତ ହୋଇଗଲି ।

ସମ୍ଭବତଃ ବାଲ୍ୟ କାଳର କୌଣସି ସୁଖଦାୟକ ଗୁଲୁଗୁଲିଆ ସ୍ମୃତିର ଉଦ୍ରେକଘଟି ମୋର ମନ ବନ୍ୟ ପୁଷ୍ପଫଳ ସମ୍ଭାରରେ ଭରିଯାଇଥିଲା ।

କୋରାପୁଟରେ ଏକ ଆଲୋକ ଦେଖାଦେଉଥିଲା । ସମ୍ଭବତଃ ଇତିହାସର ଜୁଆର ଓ ବ୍ୟକ୍ତି ପ୍ରତିଭାର ମିଳନ ଏକ ନୂଆ ଯୁଗର ସ୍ୱାଗତ ଗୀତ ଗାଇବାକୁ ପ୍ରସ୍ତୁତ ହେଉଥିଲା ।

ଉଲ୍ଲସିତ ହେଲି ଓ ଅନୁମାନ କଲି ସେଦିନ ହୁଏତ ଦୂରରେ ନାହିଁ, ଯେତେବେଳେ ମୁଁ ଏଇ ଯୁଗ ପୁରୁଷଙ୍କ ସହ ହାତ ମିଳାଇ ଚାଲିବି ଏ ଦେଶରେ ସୂର୍ଯ୍ୟୋଦୟର ଘୋଷଣା କରିବାପାଇଁ ।

ଘଟଣାବଳୀ ପବନ ବେଗରେ ମୋର ଅନାୟତ୍ତରେ ଆଗକୁ ମାଡ଼ି ଚାଲିଗଲା । ଯଦୁନାଥ ପାଖେ ପାଖେ ରହି ମୋତେ ସାହାଯ୍ୟ କରୁଥିଲେ ଓ ବାରମ୍ବାର ସୂଚନା ଦେଉଥିଲେ ଯେ ସମର ତା'ଙ୍କ ପାଟିରୁ ବସ୍ତା ସାନ୍ ସଙ୍କେତ ମିଳିବାରେ ବିଶେଷ ବିଳମ୍ବ ନାହିଁ ।

ମୋର କଲିକତା ଫେରିବା କାମନା ଝରଟି ଶୁଖିଯାଇଥିଲା । କୋରାପୁଟ ମୋତେ ଦୁଇ ବାହୁରେ ଆଲିଙ୍ଗନ କରିଥିଲା ଓ ମୋର କୋରାପୁଟ ମାଟିର ଚେରଟି ଗମ୍ଭୀରକୁ ମାଡ଼ିଯାଇଥିଲା ।

କେବଳ ଉମରକୋଟରେ ନରହି ଆମେ ବିଭିନ୍ନ ଅଞ୍ଚଳ ବୁଲୁଥିଲୁ । ଏ ଭିତରେ ମୋତେ ଧରିବାପାଇଁ କଲିକତା ପୋଲିସ୍ ତରଫରୁ ତନାଘନା ଉଦ୍ୟମ ଆରମ୍ଭ ହୋଇଯାଇଥିଲା । କେବଳ ଦଳର ଅନ୍ୟତମ ନେତ୍ରୀ ଥିବାରୁ ପ୍ରତ୍ୟକ୍ଷଭାବରେ ବା ପରୋକ୍ଷଭାବରେ ଡକାୟତି ବା ନରହତ୍ୟା ସହିତ ସମ୍ପୃକ୍ତ ନ ରହିବି ମୋତେ ଅପରାଧୀ ରୂପେ ସଜାଇବାପାଇଁ ପୋଲିସ ତରଫରୁ ଚେଷ୍ଟାର ତ୍ରୁଟି ନଥିଲା ।

ରାୟଗଡ଼ ସହର ମୋତେ ଭଲ ଲାଗିଥିଲା । ତାର ପ୍ରାକୃତିକ ପରିବେଶ ଅତ୍ୟନ୍ତ ଚମତ୍କାର ଥିଲା । ଦୁଇଟି ଦିଗରେ ଦୁଇଟି ସୁନ୍ଦର ନଦୀ କଳକଳ କଳକଳ ଶବ୍ଦକରି ବୋହି ଯାଉଥିଲେ । କାଗଜ କଳର ଯବକ୍ଷାର ଫଳରେ ନାଗାବଳୀ ନଦୀଭଳି ଏକ ସୁନ୍ଦର ନଦୀର ଜଳ ବିଷାକ୍ତ ହୋଇଉଠିଥିଲା ଓ ଜଳରେ କ୍ଲୋରିନ୍‌ର ଉପସ୍ଥିତି କୂଳର ଆଦିବାସୀ ଗାଁଗୁଡ଼ିକରେ ଫୁସ୍‌ଫୁସ୍ ଓ କଣ୍ଠନଳୀର ରୋଗକୁ ନିମନ୍ତ୍ରିତ କରୁଥିଲା ।

ବେପାରୀମାନେ ଏ ସହର ତଥା ପାଖଆଖ ଅଞ୍ଚଳର ଅର୍ଥନୀତିକୁ ନିୟନ୍ତ୍ରିତ କରୁଥିଲେ । ସେମାନଙ୍କ ଅକ୍ଟୋପସ୍ ବନ୍ଧନରୁ ସହର ଓ ଆଖପାଖ ଅଞ୍ଚଳର ଦରିଦ୍ର ସମ୍ପ୍ରଦାୟ ମୁକୁଳିବା ପ୍ରାୟ ଅସମ୍ଭବ ଥିଲା ।

ବେଶ୍ କିଛିଦିନ ମୁଁ ରାୟଗଡ଼ରେ କଟାଇଲି ।

ସେଦିନ ରାତି ପ୍ରାୟ ଦଶଟା ହେବ । ଯଦୁନାଥ ହଠାତ୍ ମୋ ରୁମ୍‌କୁ ଝଡ଼ପରି ପଶିଆସିଲେ । କହିଲେ, 'ବାଳା, ତମେ ଏକ୍ଷଣି ଏ ହୋଟେଲ

ଛୁଟିଯାଅ । ପାଖ ଗଳିରେ ହ୍ମୀଣିକାଙ୍କର ଘର ଅଛି । ତାର ପଛ ସେଠାରେ ଆଶ୍ରୟ ନେଇଯାଅ । ଏ ସହର ଭିତରର କୌଣସି ପୋଲିସ ସମ୍ବାଦଦାତା ସମ୍ଭବତଃ ପୋଲିସକୁ ଖବର ଦେଇଛି ।

ଅଣନିଃଶ୍ୱାସୀ ହୋଇ ମୁଁ ଗଳିର ଦ୍ରୁତଗତିରେ ଚାଲିବାକୁ ଲାଗିଲି । ଗଳିଟି ପ୍ରାୟ ନିର୍ଜନ ଥିଲା । ହ୍ମୀଣିକାଙ୍କ ଘରର ଅବସ୍ଥିତି ସମ୍ପର୍କରେ ମୋର ସ୍ପଷ୍ଟ ଧାରଣା ଥିଲା । ବହୁବାର ସେଠାକୁ ଯାଇ ହ୍ମୀଣିକାଙ୍କସହ ଦେଖାକରିଛି, କିନ୍ତୁ ମୋର ସେ ଦିନ କାର୍ଯ୍ୟରେ ଚରିତ ହୋଇପାରୁନଥିଲା ।

ଦ୍ରୁତଗତିରେ ରାସ୍ତା ଉପରେ ଚାଲୁଥିବାବେଳେ ହଠାତ୍ ଏକ ଅଦ୍ଭୁତ ଯୋଜନା ମୁଣ୍ଡ ଭିତରକୁ ଚାଲିଆସିଲା । କେମିତି ହୁଅନ୍ତା ମୁଁ ଯଦି ହ୍ମୀଣିକାଙ୍କୁ ଅନୁରୋଧ କରନ୍ତି ମୋତେ ତାଙ୍କର ସ୍ୱାମୀବୋଲି ପରିଚୟଦେଇ କିଛିଦିନ ନିରାପଦ ଆଶ୍ରୟ ଦେବାପାଇଁ ।

ମଣିଷ ଜୀବନରେ ଗୋଟିଏ ଗୋଟିଏ ମୁହୂର୍ତ୍ତର ଗୁରୁତ୍ୱ ଅତ୍ୟନ୍ତ ବେଶୀ । କୋଟି କୋଟି ସାଧାରଣ ମୁହୂର୍ତ୍ତ ମଧ୍ୟରେ ଏଭଳି ଗୋଟିଏ ଗୋଟିଏ ମୁହୂର୍ତ୍ତକୁ ଅସାଧାରଣ କୁହାଯାଇପାରେ ।

ଏହି ବ୍ରହ୍ମାଣ୍ଡ ବିଶ୍ୱରେ ଶୂନ୍ୟ ସ୍ଥାନ ଏତେ ବେଶୀ ଯେ ଦୁଇଟି ନକ୍ଷତ୍ର ପରସ୍ପର ନିକଟବର୍ତ୍ତୀ ହେବାର ସମ୍ଭାବନା ଏକନିୟୁତ ମଧ୍ୟରେ ଏକ ସଂଖ୍ୟା ମଧ୍ୟ ନୁହେଁ । ସେଭଳି ଏକ ପ୍ରାୟ— ଅସମ୍ଭବ ବ୍ୟାପାର ଘଟିବାଫଳରେ ସୂର୍ଯ୍ୟ ନାମ ଗ୍ରହଣ କରିଥିବା ଏକ ନକ୍ଷତ୍ର ତାର ପରିବାର ସୃଷ୍ଟିକରିପାରିଲା । ପୃଥିବୀର ବୈଜ୍ଞାନିକମାନେ ପ୍ରାୟ ଏକମତ ଯେ ପୃଥିବୀରେ ଜୀବନ ସୃଷ୍ଟି ଏକ ଏକସିଡେଣ୍ଟ ଫଳରେ ହିଁ ସମ୍ଭବ ହୋଇପାରିଲା ।

ବେଳେ ବେଳେ ସ୍ତବ୍ଧ ଅନ୍ଧାରର ନିସ୍ତବ୍ଧତାରେ ଭାବେ ହ୍ମୀଣିକାଙ୍କର ଘରେ ସେଦିନ ମୁଁ ଯଦି ପ୍ରବେଶ କରି ତାଙ୍କ ସ୍ୱାମୀର ଅଭିନୟ ଅଧିକାର ତାଙ୍କଠୁ ହାସଲ କରି ନଥାନ୍ତି, ତେବେ ମୋ ଜୀବନ ଆଜି ଏକ ଭିନ୍ନ ଦିଗରେ ଅଗ୍ରସର ହୋଇଥାନ୍ତା ।

ତୀକ୍ଷ୍ଣ ବୁଦ୍ଧିର ଅଧିକାରିଣୀ ବୋଲି ଗର୍ବ କରୁଥିବା ସତ୍ତ୍ୱେ ମୁଁ ସେ ଦିନ ସାଂଘାତିକ ଭାବରେ ଠକି ହୋଇଗଲି । ହ୍ମୀଣିକା ପରିସ୍ଥିତିର ରୂପରେ

ଭାଗ୍ୟଦୋଷ ଯେତେବେଳେ ମୁଁ ତାଙ୍କର ସ୍ତ୍ରୀ ବୋଲି ପୋଲିସ ଏସ୍.ପି.ଙ୍କୁ ପରିଚୟ ଦେଲେ, ସେତେବେଳେ ଏସ୍.ପି. ମୋତେ ଗିରଫ ନକରି ଛଡ଼ାଇ ନେଇଥିଲେ। ମୁଁ ସେ କଥାକୁ ସହଜ ଓ ସରଳ ଭାବରେ ଗ୍ରହଣ କରିନେବା ଫଳରେ ଭବିଷ୍ୟତର ଏକ ଷଡ଼ଯନ୍ତ୍ର କବଳରୁ ମୋତେ କିମ୍ବା ମୋ ସ୍ୱାମୀଙ୍କୁ ମୁକୁଳାଇ ପାରିଲି ନାହିଁ।

ଅପାର କ୍ଷମତାର ଅଧିକାରିଣୀ ହେବା ଫଳରେ ଯେତେବେଳେ ମୁଁ ସଞ୍ଜୟ ଦୃଷ୍ଟି ଲାଭ କଲି, ସେତେବେଳେ ନିଜର ବୁଦ୍ଧିହୀନତାକୁ ଧିକ୍କାର କରିବାକୁ ଇଚ୍ଛାହେଲା। ଯଦୁନାଥ ଯେ ଏକ ତୀକ୍ଷ୍ଣଧୀ ସମ୍ପନ୍ନ ଗୁଇନ୍ଦା ଅଫିସର ଏବଂ ସମର ଦା'ଙ୍କୁ ତଥା ମୋତେ ଯେ ଅତି ସୂକ୍ଷ୍ମ ସୂତ୍ରର ପ୍ରତାରଣାର ସମ୍ମୁଖୀନ ହେବାକୁ ପଡ଼ିଥିଲା, ଏହା ମୁଁ ପରେ ଜାଣିପାରିଲି। ମୋର ସୌଭାଗ୍ୟ ନକ୍ସଲାଇଟ୍ ବନ୍ଧୁମାନଙ୍କ ସମ୍ପର୍କରେ କୌଣସି ଗୁପ୍ତ ତଥ୍ୟ ମୋ ଠାରୁ ଯଦୁନାଥ ଜାଣିବା ପୂର୍ବରୁ କୁମୀରକାଙ୍କ ସହଧର୍ମିଣୀ ଭାବରେ ମୋର ଏକ ନୂଆ ଜୀବନର ସୂତ୍ରପାତ ହୋଇପାରିଥିଲା।

ସମରଦା'ଙ୍କର ବିଶ୍ୱାସୀ ଲୋକ ଭାବରେ ଅଭିନୟ କରି ଯଦୁନାଥ ମୋର ଯାହା କ୍ଷତି କଲେ ସେଥିପାଇଁ ମୋତେ ସାରା ଜୀବନ ଜଳିବାକୁ ପଡ଼ିବ। କୁମୀରକାଙ୍କ ହତ୍ୟା ସମ୍ବାଦ ଜାଣିଲା ପରେ ଗୋଟିଏ ମୁହୂର୍ତ୍ତ ବି ମୁଁ ଶାନ୍ତିରେ ନିଦ୍ରା ଯାଇ ପାରିନାହିଁ।

ଯଦୁନାଥ ମୋର ପିଛା ନେଇଥିଲେ ଗୁପ୍ତ ସମ୍ବାଦ ସଂଗ୍ରହ କରି କେତେ ଜଣ ନକ୍ସଲାଇଟ୍ ଯୁବକଙ୍କୁ ଜେଲର ଉଚ୍ଚା ପାଚେରୀ ଭିତରେ ଆବଦ୍ଧ କରିବା ସୁଯୋଗ ହାସଲ କରିବାଲାଗି, କିନ୍ତୁ ସେ କଥା ସମ୍ଭବ ହୋଇ ପାରିଲାନି।

ବିପ୍ଳବୀମାନଙ୍କୁ ଧରିବାପାଇଁ ବହୁ ଆୟାସ ସହକାରେ ତିଆରି କରିଥିବା ଏକ ଥୋପ ହାତରୁ ଖସିଯାଉଛି ବୋଲି ଯଦୁନାଥ ଯେତେବେଳେ ହୃଦୟଙ୍ଗମ କରୁଥିବେ ତାଙ୍କ ମନ ନିଶ୍ଚୟ ବିଷାଦ ରାଜ୍ୟର ପଥିକ ହୋଇଯାଉଥିବ।

ଫଟରେ ପରେ ସେ ଉପବନମଣ୍ଡଳକୁ ସବୁକଥା ଜଣାଉଥିଲେ ଓ ଏକ ଜଘନ୍ୟ ତଥା ଅନ୍ତଃକାମୀ ଷଡ଼ଯନ୍ତ୍ରର ଅଂଶୀଦାର ହେବାକୁ ତାଙ୍କୁ ତୁଙ୍ଗ କର୍ମୀ କର୍ତ୍ତା ଗୋପନ ନିର୍ଦ୍ଦେଶ ଦେଇଥିଲେ ।

ଦୁର୍ଭେଦ୍ୟ ଅକର୍ମଣିକାକୁ ଫଟାଇ ଅଭିବାସୀ ମାଳିକମାନେ ଗୁଦ୍‌ଗୁଡ଼ା ଜଳପ୍ରପାତର ସୃଷ୍ଟି କରିଥିଲେ ବୋଲି କମ୍ବଦନ୍ତୀ କୋଉପୃଷ୍ଠାରେ ଶୁଣିଛ, କିନ୍ତୁ ସ୍ୱମୀଶିକାଙ୍କ ମନରେ ସ୍ୱାମୀପଣିଆର ଝର ସୃଷ୍ଟି କରିବା ଯେ ଆହୁରି କଷ୍ଟକର, ଏହା ମୁଁ ଜାଣି ନଥିଲି ।

ରୂପକଣ୍ଟ ବୋଲି ଯେଉଁ ଗର୍ବ ମୋର ଥିଲା ତାହା ଧୂଳିସାତ୍ ହୋଇ ଯାଇଥିଲା । ସ୍ୱମୀଶିକାଙ୍କ କିଛି ଦିନର ସାନ୍ନିଧ୍ୟ ମଧ୍ୟରେ ମୋର ବାରମ୍ବାର ମନେପଡୁଥିଲା କୁମାର ସମ୍ଭବର, ସେହି ଅମର ପଙ୍କ୍ତି, 'ନିନ୍ଦ ରୂପ ହୃଦୟେନ ପାର୍ବତୀ, ପ୍ରିୟେଷୁ ସୌଭାଗ୍ୟଫଳା ହି ଚାରୁତା' । ପାର୍ବତୀ ନିଜ ରୂପକୁ ନିନ୍ଦା କରିବାକୁ ଲାଗିଲେ, ପ୍ରିୟଙ୍କୁ ଯାହା ଆକର୍ଷିତ କରେ, ତାହା ହିଁ ସୌନ୍ଦର୍ଯ୍ୟ ।

ଶିବଙ୍କ କରୁଣା ଲାଭ କରିବା ପାଇଁ ଅଶ୍ରୁତପୂର୍ବ ତପସ୍ୟାର ଆଶ୍ରୟ ନେଇଥିଲେ ଗୌରୀ । ମୃଣାଳ ପେଲବ ଅଙ୍ଗକୁ ଅହର୍ନିଶ କଷଣ ଦେଇ ପ୍ରସିଦ୍ଧ ତପସ୍ୱୀମାନଙ୍କୁ ମଧ୍ୟ ପ୍ରତିଯୋଗିତାରେ ପଛରେ ପକାଇ ଦେଇଥିଲେ ଉମା ।

ସ୍ୱମୀଶିକାଙ୍କ ସାଙ୍ଗରେ ମୁଁ ସାରା ଭାରତ ବୁଲିଛି । ଘନ ଜଙ୍ଗଲର କଣ୍ଟା ଓ ହିଂସ୍ରଜନ୍ତୁଙ୍କ ଆକ୍ରମଣ ଭୟ, ପ୍ରଚଣ୍ଡ ତାପଭରା ମରୁଦେଶରେ ଯନ୍ତ୍ରଣାଦାୟୀ ପଦବ୍ରଜ, କୌଣସି କଷ୍ଟ ମୋତେ ନିରୁତ୍ସାହିତ କରିପାରିନି; କୌଣସି ବେଦନା ମୋ ମନର ବଳକୁ ଭାଙ୍ଗି ପାରିନି ।

ପଥର ତରଳିଛି । ଶିଳା ଦେହରେ ମଣିଷର ମନ ସଂଜାତ ହୋଇଛି । ସ୍ୱମୀଶିକା ମୋତେ ଗୃହିଣୀର ଆସନ ଦେଇଛନ୍ତି ।

ତା'ପରେ...ତା'ପରେ ପୁଣି ଯଦୁନାଥ ଆସିଛନ୍ତି ଆମର ପରିସର ଭିତରକୁ । ସାନ୍ନିଧ୍ୟର ସୁଯୋଗ ନେଇ ସେ ସମସ୍ତଙ୍କ ଅଜ୍ଞାତରେ ସ୍ୱମୀଶିକାଙ୍କ

ଖାଦ୍ୟରେ ମିଶାଇ ଦେଇଚନ୍ତି କୌଣସି ଷଡ଼ଯନ୍ତ୍ରକାରୀ ଚକ୍ରୀ । ଫଳରେ ସ୍ୱାମୀଜୀଙ୍କ ଠାରେ ହୃଦ୍‌ରୋଗର ଲକ୍ଷଣ ଦେଖାଦେଇଛି ।

ଆଉ ସେହି ହୃଦରୋଗ ବିଶେଷଜ୍ଞଗଣ ! ସେହି ଭଲ ଦରମା ପ୍ରାପ୍ତ ଡାକ୍ତର ପାପିଷ୍ଠମାନେ !! ସେମାନେ ଚକ୍ରାନ୍ତରେ ଅଂଶୀଦାର ହୋଇଛନ୍ତି । ଔଷଧ ବଳରେ ମୋର ମସ୍ତିଷ୍କକୁ ସେମାନେ ସାମୟିକ ଭାବେ ପଙ୍ଗୁ କରିଦେଇଛନ୍ତି । ସ୍ୱାମୀଜୀଙ୍କୁ ସ୍ଥାନାନ୍ତରିତ କରି ସ୍ୱାମୀଜୀଙ୍କ ସାଦୃଶ୍ୟ ଥିବା ଏକ ଅଜ୍ଞାତ ବ୍ୟକ୍ତିର ଶବକୁ ତାଙ୍କ ସ୍ଥାନରେ ରଖି ସ୍ୱାମୀଜୀଙ୍କ ମୃତ୍ୟୁ ସମ୍ବାଦ ଘୋଷଣା କରିଛନ୍ତି ।

ସ୍ୱାମୀଜୀଙ୍କ ମୃତ୍ୟୁ ସମ୍ବାଦ ମୋ ମସ୍ତିଷ୍କକୁ ଅଘାତ କରିଦେଇଥିଲା । ଫଳରେ ମୁଁ ଅନ୍ୟମାନଙ୍କ ହାତର କ୍ରୀଡ଼ନକ ହୋଇଗଲି ଏବଂ ଏକ ଅଜ୍ଞାତ ବ୍ୟକ୍ତିର ଶବକୁ ସାଥିରେ ନେଇ ଝଞ୍ଜାବତୀ ନଦୀ କୂଳରେ ତାକୁ ଅଗ୍ନି ଗର୍ଭସ୍ଥ କରିବାର ବ୍ୟବସ୍ଥା କରିଥିଲି ।

ସେହି ଉତ୍ପାତ ପରିବେଶରେ ପ୍ରଧାନମନ୍ତ୍ରୀଙ୍କ ସହଯୋଗ ମୋତେ ବିହ୍ୱଳିତ କରିଦେଲା । ସ୍ୱାମୀଜୀଙ୍କ ପ୍ରତି ତାଙ୍କର ଶ୍ରଦ୍ଧାରେ ଯେ ଏତେ ଟିକଏ ଆନ୍ତରିକତା ରହିଛି, ତା ମୁଁ ବିଶ୍ୱାସ କରିପାରିନଥିଲି ।

ପ୍ରତାରଣାର ଶେଷ ବେଳରେ ମୁଁ ତଳକୁ ତଳକୁ ଚାଲିଗଲି । ମୋର ବିଶ୍ୱାସର ଦୁରୁପଯୋଗ କରି ସେମାନେ ମୋର ସ୍ୱାମୀଙ୍କୁ କାରାଗାରରେ ହତ୍ୟା କଲେ ।

ମୃତ୍ୟୁର ଚରମ ମୁହୂର୍ତ୍ତରେ ମଧ୍ୟ ସେହି ବୀର ପୁରୁଷଙ୍କର ତେଜ ଶାସକ ଦଳର ମୁଖାମାନଙ୍କୁ କ୍ଷୁବ୍ଧ କରିଦେଇଥିଲା । ସମସ୍ତ ପ୍ରକାର ଅତ୍ୟାଚାର ସତ୍ତ୍ୱେ ଶାସକଦଳକୁ ସମର୍ଥନ କରୁଥିବା ଏକ ପତ୍ରରେ ସ୍ୱାମୀଜୀ ସ୍ୱାକ୍ଷର ଦେବାକୁ ମନା କରିଚନ୍ତି ।

ମୃତ୍ୟୁଞ୍ଜୟୀ ଜଣେ ବୀରପୁରୁଷଙ୍କର ସହଧର୍ମିଣୀ ରୂପେ ଯେତିକି ଆତ୍ମସନ୍ତୋଷ ମୁଁ ପାଉଛି, ସେତିକି ସନ୍ତୋଷ ଅନ୍ୟ କୌଣସି କାର୍ଯ୍ୟରେ ମୁଁ ପାଇନି ।

ଚର୍ଚ୍ଚାନ୍ତବଳରେ ଘଟିଥିବା ଘଟଣା ନଜାଣିବା ଫଳରେ ପ୍ରଧାନମନ୍ତ୍ରୀଙ୍କ ପ୍ରତି ଏ ଅଭାଗିନୀର ସମ୍ମାନ ଓ ଶ୍ରଦ୍ଧା ବହୁତ ବଢ଼ି ଯାଇଥିଲା ଓ ମୋର ଦୃଢ଼ ବିଶ୍ୱାସ ଜାତ ହୋଇଥିଲା ଯେ ଏକମାତ୍ର ସେ ହିଁ ହୁମୀରକାଙ୍କ ଆଦର୍ଶକୁ ଅନ୍ତଃମରୁଁପ କାର୍ଯ୍ୟକାରୀ କରିପାରିବେ ।

ବହୁଦିନପରେ ଯେତେବେଳେ ସମସ୍ତ ବିଷୟ ଅଣ୍ଟିନଭ ଭାବରେ ମୋର ଶ୍ରୁତି ଗୋଚର ହେଲା, ମୋ ମନର ସମସ୍ତ ଦିଗନ୍ତରେ କେବଳ ରକ୍ତ ଓ ଚଞ୍ଚାଂସ ବର୍ଷା ଆରମ୍ଭ ହୋଇଗଲା । ମୋର ମନେ ହେଲା ମୁଁ ପାଗଳ ହୋଇଯିବି ।

ପ୍ରଧାନମନ୍ତ୍ରୀ ମୃଦୁ ବିଷୟର ବ୍ରଣକ୍ୟ ଚରିତ୍ରର ଭୂମିକା ଅବତାରଣା କରି ମୋତେ ବୁଝାଇ ଥିଲେ,‘ଦେଶବାଳା ଦେଖ, ଆପଣ ମୋର କନ୍ୟାଭଳି । ଆପଣଙ୍କୁ ଓ ହୁମୀରକାଙ୍କୁ ଆମ ଦ୍ୟାମ୍‌କୁ ଅଣିବା ଲକ୍ଷ୍ୟରଖି ମୁଁ ଏ ଷଡ଼ଯନ୍ତ୍ର ପାଇଁ ନିଜର ସ୍ୱୀକୃତି ଅର୍ପଣ କରିଥିଲି । ମୁଁ ଜାଣିନଥିଲି ହୁମୀରକାଙ୍କୁ ସେମାନେ ହତ୍ୟା କରିବେ ।’

ରଙ୍ଗାନଗରେ ବହୁକାଳ ବୋଝିଯାଇଥିଲା । ତଥାପି ଯେଉଁ ଦୁବୃତ୍ତମାନେ ହୁମୀରକାଙ୍କ ହତ୍ୟା ଷଡ଼ଯନ୍ତ୍ରରେ ଅଂଶୀଦାର ଥିଲେ, ମୁଁ ଗୋଟିଏ ଗୋଟିଏ କରି ସେମାନଙ୍କର ସର୍ବନାଶ କରିବାକୁ ଚେଷ୍ଟା କରିବାକୁ ଲାଗିଲି । କାରଣ ସେତେବେଳକୁ ପ୍ରତିହିଂସାର ଜାଜ୍ୱଲ୍ୟ ମୋର ସମସ୍ତ ଧମନୀ ଓ ଶିରାପ୍ରଶିରାରେ ପ୍ରସରି ଯାଇଥିଲା ।

ଯଦୁନାଥଙ୍କଠାରୁ ଆରମ୍ଭ କରି ସର୍ବୋଚ୍ଚ ସ୍ତରର ଅଫିସରଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକଙ୍କୁ ମୂଲ୍ୟ ଦେବାକୁ ପଡ଼ିଥିଲା ନିଜର କୃତକର୍ମ ପାଇଁ ।

ପ୍ରଧାନମନ୍ତ୍ରୀଙ୍କୁ କିଛି ନ କରି ପାରିବାର ଅବଶୋଷ ବେଳେବେଳେ ମୋର ମନକୁ ବିପର୍ଯ୍ୟସ୍ତ କରି ଯମଯନ୍ତ୍ରଣା ମୋତେ ଦେଉଛି; କିନ୍ତୁ ମୁଁ ନାଚାର । ମୋର ଦୁର୍ବଳତା ସମ୍ପର୍କରେ ମୁଁ ପ୍ରଥମରୁ ହିଁ ଲେଖିସାରିଛି ।

ମୋର କାର୍ଯ୍ୟକଳାପ ସମ୍ପର୍କରେ ମୁଁ କିଛି ସଫେଇ ଦେବାକୁ ଇଚ୍ଛାକରୁନି କାରଣ ସେଗୁଡ଼ିକ ମୋ ଜୀବନ ପୁସ୍ତକର ଏକ ଖୋଲାପୃଷ୍ଠାରେ ଲିପିବଦ୍ଧ ରହିଛି ।

ମୋର ଗୀତାରେ ବିଶ୍ୱାସ ରହିଚି । ତେଣୁ ଏ ଅପମୃତ୍ୟୁ ମୋର ଆତ୍ମାକୁ ନଷ୍ଟ କରିଦବ ବୋଲି ମୁଁ ଭାବୁନି । ଗୋଟିଏ ପୁରାତନ ଲୁଗାକୁ ଫୋପାଡି ଦେଲଭଳି ମୋ ଆତ୍ମା ଆଜି ମୋର ଏ ପୁରାତନ ଶରୀରକୁ ଫୋପାଡ଼ି ଦଉଚି । ମୋର କେବଳ ଏତିକି ଆଶା, ଆରଜନ୍ମରେ ମୁଁ ମୋର ସ୍ୱାମୀ ଲକ୍ଷ୍ମୀଧରଙ୍କ ପ୍ରତି ଅନ୍ୟାୟ କରିବି ନାହିଁ । ମୁଁ ଅମୃତର ପୁତ୍ରୀ, ତେଣୁ ଏ ପରିସ୍ଥିତି ଜନିତ ସାମୟିକ ବିଚ୍ୟୁତି, ଯାହାପାଇଁ ମୁଁ ଚରମ ମୂଲ୍ୟ ଦେଉଛି, ମତେ ଜ୍ୟୋତିର୍ମୟ ପଥର ପଦଚାରଣାରୁ ବିରତ କରିପାରିବ ନାହିଁ ।



## ଲେଖକଙ୍କ ଅନ୍ୟାନ୍ୟ ବହିର ନାମ

ମଣିଷ ଟଳେ, କାନନ କଳେ (ଉପନ୍ୟାସ)

ମଶାଲର ଜୁହ୍ନ (ଉପନ୍ୟାସ)

ରଞ୍ଜିତ ଅସିଧାରେ (ଐତିହାସିକ ଉପନ୍ୟାସ)

ରକ୍ତବେଳାର ନାୟକ (ଐତିହାସିକ ଉପନ୍ୟାସ)

ମୋ ଦେଶାନ୍ତରେ ଭୁବନେଶ୍ୱର (କବିତା)

ମୋ କବିତା ଛୁଅଁ ନାହିଁ (କବିତା)

ଅମ ପରିବେଶ

# କ୍ରାନ୍ତିକାମୀ ଲେଖକ ଓ ପାଠକ ସଙ୍ଘର ଆତ୍ମକଥନ

ଆମର ସ୍ଥାନ ଐଶ୍ୱର୍ଯ୍ୟ-ଝଲସିତ ଦରବାର ନୁହେଁ; ଆମର ସ୍ଥାନ ବିପନ୍ନ ମଣିଷର ଉଚ୍ଛନ୍ନ କୁଟୀରର ଦ୍ୱାରଦେଶରେ । ଆମେ ମୁଣ୍ଡ ବନ୍ଧା ପକାଇବୁନି କେବେ କୁବେର କିମ୍ବା ସମ୍ରାଟ ପାଖରେ ।

ଏ ଗଳିତ ସମାଜରେ ଆମର ଶ୍ରେଷ୍ଠ ପୁରସ୍କାର ପୋଲିସର ଲାଠି, ଗୁଣ୍ଡାର ଛୁରି କିମ୍ବା ଶାସକର କାରାଗାର । ଆମର ଗୁରୁ ମାର୍କସ୍, ବିବେକାନନ୍ଦ, ଗାନ୍ଧୀ, ଲୋହିଆ, ଜୟପ୍ରକାଶ, ଆମ୍ବେଦକର, କିଙ୍ଗ୍, ପେଟ୍ରାକେଲି(ଗ୍ରୀନ୍‌ଦଳ) ମଧୁ ଓ ଗୋପବନ୍ଧୁ ।

ଆମର କଲମ ସ୍ପନ୍ଦେ ଜୀବନର ଲୟରେ । ମାନବ ଚେତନାକୁ ଜାଗ୍ରତ ଭାବନା ପରିପୁଷ୍ଟ କରେ ବୋଲି ଆମର ବିଶ୍ୱାସ । ମଧୁ, ଗୋପବନ୍ଧୁଙ୍କ ଜୀବନୀ ଏହାର ସାକ୍ଷୀ । ଆମ ପ୍ରକାଶିତ ପ୍ରତ୍ୟେକ ପୁସ୍ତକ ଚିନ୍ତା କିମ୍ବା ପରିବେଶ (ସାମାଜିକ ତଥା ପ୍ରାକୃତିକ) ସଚେତନ ସ୍ୱଳ୍ପଆୟକାରୀ ବ୍ୟକ୍ତି କିଣି ପାରିବେ ଅଳ୍ପମୂଲ୍ୟରେ । ଆମର ସମସ୍ତ ପୁସ୍ତକର ବିକ୍ରୟଲବ୍ଧ ଧନ ବିନିଯୋଗ ହେବ କେବଳ ଉନ୍ନତ ମାନର ପୁସ୍ତକ (ବିଶେଷତଃ ଉପନ୍ୟାସ) ପ୍ରକାଶନ ପାଇଁ ।

ଆମେ ସୃଷ୍ଟିକୁ ସମ୍ମାନ ଦେଉ, ପ୍ରତିଷ୍ଠା ଷ୍ଟାଟସ୍ କିମ୍ବା ଧନ ଆମପାଇଁ ଏକ ନିଡ଼ିଙ୍କାଞ୍ଚଳ ।

ଆମ ଲକ୍ଷ୍ୟସିଦ୍ଧ ଏକମତ ପ୍ରତ୍ୟେକ ବ୍ୟକ୍ତି, ଆମ ସଂଘର ଏକ ସମ୍ମାନିତ ସଦସ୍ୟ ବୋଲି ଆମେ ମନେକରୁ ।

ଆମ ପୁସ୍ତକ ଆପଣ ପାଠକର ଫେରାଇ ପାରିବେ ଅକ୍ଷତ ଅବସ୍ଥାରେ ଏକ ସପ୍ତାହ ମଧ୍ୟରେ ଏକଟଙ୍କା (କଭରଟା ବନ୍ଧପାଇଁ ପଚାଶ ପଇସା) ଓ ମୂଲ୍ୟମତ ବିନିମୟରେ । ଏ ଯୋଜନାଟି ପରୀକ୍ଷା ମୂଳକ ଭାବେ ପ୍ରବର୍ତ୍ତନ କରାଯିବ । କାରଣ ଛପାଖର୍ଚ୍ଚ ନଉଠିଲେ ନୂତନ ପୁସ୍ତକ ପ୍ରକାଶ କଷ୍ଟକର ହୋଇ ଉଠିବ ।

ଆପଣଙ୍କ ଅଞ୍ଚଳରେ କାହାପାଖରେ ପୁସ୍ତକ ଆମେ ଜମାଦେବୁ, ଜଣାଇବେ ।

★ ★ ★